ନବୀନ କୁମାର ପରିଡ଼ାଙ୍କ

# ବାଇ ଚଢ଼େଇର ଡେଣା

## ଓ ଅନ୍ୟାନ୍ୟ ନାଟକ





ଜୟଗୁରୁ

# ବାଇ ଚଢ଼େଇର ଡେଣା

# ଓ

# ଅନ୍ୟାନ୍ୟ ନାଟକ

ନବୀନ କୁମାର ପଣ୍ଡା
ପ୍ରାକ୍ତନ ଅଧ୍ୟକ୍ଷ, ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ
ଭୁବନେଶ୍ୱର

ବାଇ ଚଢ଼େଇର ଡେଣା ଓ ଅନ୍ୟାନ୍ୟ ନାଟକ

ଲେଖକ : ନବୀନ କୁମାର ପରିଡ଼ା

ପ୍ରଥମ ସଂସ୍କରଣ : ଡିସେମ୍ବର ୨୫, ୨୦୧୯

ପ୍ରକାଶକ : ଅନ୍ନପୂର୍ଣ୍ଣା ପରିଡ଼ା
ଜିତ୍ ପ୍ରକାଶନ୍, ବି-୬/୧୦, ଇନ୍ଦିରା ହାଉସିଂ କଲୋନି
ପୋ: ଶିଶୁପାଳଗଡ଼, ଭୁବନେଶ୍ୱର-୭୫୧୦୦୨

ମୁଦ୍ରଣ : ଦିବ୍ୟ ମୁଦ୍ରଣୀ
ସାମନ୍ତରାୟପୁର, ଭୁବନେଶ୍ୱର

ମୂଲ୍ୟ : ₹ ୧୮୦ /-

**Bai Chadheira Dena O' Anyanya Natak**

**Writer: Nabin Kumar Parida**

First Edition: December 25, 2019

Publisher: **Annapurna Parida**
Jeet Prakashan, B-6/10, Indira Housing Colony
P.O.: Sisupalgarh, Bhubaneswar-751002

Printed at: **Divya Mudrani**
Samantarapur, Bhubaneswar

Price: ₹ 180 /-

# ସୂଚିପତ୍ର

(ପରଦା ଉଠିଲା ବେଳକୁ ଦେଖାଗଲା। ଘରଭିତରେ ଅଳ୍ପ ଆଲୁଅ ଛାତରୁ ଝୁଲନ୍ତା ଆଲୁଅଟିଏ ଜଳୁଛି ଓ କ୍ରମେ ଧୀରେ ଧୀରେ ଡାହାଣରୁ ବାମକୁ ଝୁଲି ଝୁଲି ହଲୁଛି। ଘରେ ଟେବୁଲ ଓ ଗୋଟିଏ ଚେୟାର, ଗୋଟିଏ ଷ୍ଟୁଲ ଅଛି। ଟେବୁଲ ଆଗରେ ଗୋଟିଏ ନାରୀର ଛାୟାମୂର୍ତ୍ତି ବ୍ୟସ୍ତ ବିବ୍ରତ ଭାବରେ ଏ ମୁଣ୍ଡ ସେ ମୁଣ୍ଡ ବୁଲୁଛି। ଘୁ ଘୁ ହୋଇ କାନ୍ଦୁଛି। କିଛି ସମୟ ପରେ ଛାୟା ମୂର୍ତ୍ତିଟି ଯାଇ ଚେୟାରରେ ବସିଲା ଓ ଡାଇରୀ ଖୋଲି ଚିଠି ଲେଖିଲା। କ୍ରମେ ଦୋଳାୟମାନ ଆଲୋକଟି ସ୍ଥିର ହେଲା ଓ ମଞ୍ଚରେ ଆଲୋକ କ୍ରମଶଃ ଉଜ୍ଜଳ ହୋଇ ଆସିଲା। ଇତି ମଧ୍ୟରେ ଚିଠି ଲେଖା ଶେଷ କରି ଝିଅଟି ପୁଣି ଥରେ ଚିଠିଟି ପଢ଼ିଲା।)

କୁନ୍ତଳା : ମାଆ ! ମୋର ଏଇ ଶେଷ ପ୍ରଣାମ ଗ୍ରହଣ କରିବୁ। ତୁ ଦେଖାଇଥିବା ରାସ୍ତା ଆଉ ମୁଁ ଦେଖିଥିବା ଅସୁମାରୀ ସ୍ୱପ୍ନ ସବୁକୁ ନେଇ ମୁଁ ଗାଁରୁ ସହରକୁ ଆସିଥିଲି। ନିଜର ଚେଷ୍ଟା ଆଉ ପରିଶ୍ରମ ବଳରେ ନିଜ ପାଇଁ ଗୋଟିଏ ସ୍ୱତନ୍ତ୍ର ପରିଚୟ ମଧ୍ୟ ମୁଁ ସୃଷ୍ଟି କରି ପାରିଥିଲି। ନିଜ ଉପରେ ଥିବା ଆତ୍ମବିଶ୍ୱାସ, କର୍ତ୍ତବ୍ୟ ନିଷ୍ଠା ଆଉ ସଚ୍ଚୋଟ ପଣିଆକୁ ସମ୍ବଳ କରି ମୁଁ ସଫଳତାର ପାହାଚ ପରେ ପାହାଚ ଚଢ଼ିଚାଲିଲି କିନ୍ତୁ ହିମାଳୟରୁ ଦ୍ରୌପଦୀଙ୍କ ପାଦ ଖସିଗଲା ପରି ଜୀବନର ଏକ ଦୁର୍ବଳ ମୁହୂର୍ତ୍ତରେ ମୋର ବି ପାଦ ଖସିଗଲା। ଏବେ ମୁଁ ଭାରସାମ୍ୟ ହରାଇ କ୍ଷତ ବିକ୍ଷତ ହୋଇ ସାରିଛି। କାହାର ସ୍ତ୍ରୀ ହେବା ଆଗରୁ ଆଉ କାହାର ମାଆ ହେବାକୁ ଯାଉଛି। ମାତୃତ୍ୱର ସେଇ ପ୍ରଥମ ଶିହରଣ ଠାରୁ ପ୍ରତାରଣାର ଯନ୍ତ୍ରଣା କୁ ମୁଁ ଆଉ ବରଦାସ୍ତ କରିପାରୁନି। ମୋ ପାଇଁ ମୋ ଶରୀର ଅନ୍ୟ କାହାର ପରିତ୍ୟକ୍ତ ବିଳାସ ସମାଗ୍ରୀ ପରି କଳଙ୍କିତ ମନେ ହେଉଛି। ଏଣୁ ମୁଁ ପ୍ରତିଶୋଧ ନେବାକୁ ଚାହେଁ, କିନ୍ତୁ ଦ୍ରୌପଦୀ ଭଳି ପ୍ରତିଶୋଧ ନେବା ମୋ ପକ୍ଷରେ ସମ୍ଭବ ନୁହେଁ। ଏଣୁ ମୋର ଏଇ ଅବାଂଛିତ ଶରୀରକୁ ବିନଷ୍ଟ କରି ଦେବାକୁ ଚାହେଁ। ନିଜ ଆଖିରେ ନିଜେ ତ ପତିତ ହୋଇ ସାରିଛି ଏବେ ସାରା ସମାଜ ଆଖିରେ ସେଇ ଘୃଣାର ପ୍ରତିରୂପ ଦେଖିବାର ଧୈର୍ଯ୍ୟ ଓ ସାହସ ଆଉ ମୋର ନାହିଁ ତେଣୁ ମୁଁ ଏ ଜୀବନର ସବୁ ସମ୍ପର୍କକୁ ଏଇଠି ଇତି କରି ଦେବାକୁ ସ୍ଥିର କରିନେଇଛି। ଇତି କୁନ୍ତଳା। (ଆଖିରୁ ଲୁହ ପୋଛିଲା। ଘରର ବିଭିନ୍ନ ଦିଗକୁ ଅନେଇ ନିଜର ବ୍ୟାଗରୁ ଗୋଟିଏ ମୋଟାଦୌଡି ବାହାର କଲା। ଟେବୁଲ ଉପରେ ଚଢ଼ି ତାକୁ ପଙ୍ଖାଉପରକୁ ପକାଇବାକୁ ଚେଷ୍ଟା କଲା। ମାତ୍ର ଅସଫଳ ହେଲା ତା'ପରେ ଟେବୁଲ ଉପରେ ଷ୍ଟୁଲ ପକାଇ ତା'ଉପରେ ଚଢ଼ିବାର ଚେଷ୍ଟା କଲା। ନିଜର ଭାରସାମ୍ୟ ହରାଇ ପଡ଼ିଯିବା ଭୟରେ ତା'ଉପରେ ଚଢ଼ିଲା ନାହିଁ। ତାପରେ ଦେଖିଲା ଗୋଟିଏ ଛୁରି ପଡିଛି ତାକୁ ଆଣି ଦେଖିଲା ସେଥିରେ ଧାର ନାହିଁ ତାକୁ ଭୂଇଁରେ ଘସି ଧାର କରିବାକୁ ଚେଷ୍ଟା କଲା ମାତ୍ର ଧାର କରିପାରିଲା ନାହିଁ। ତା'ପରେ ଚିନ୍ତିତ ହୋଇ ପଡିଲା। ଓ ତା'ର ମନେ ପଡିଲା ଯେ ତା ବ୍ୟାଗରେ ନିଦ ଔଷଧ ଅଛି

ତାକୁ ବାହାର କଲା ଓ ବୋତଲ ଖୋଲି ଖାଇବାକୁ ଗଲା ବେଳକୁ କବାଟରେ ଠକ୍ ଠକ୍ ଶବ୍ଦ ହେଲା ବାରମ୍ବାର ଶବ୍ଦରେ ବ୍ୟତିବ୍ୟସ୍ତ ହୋଇ ପଡିଲା ଝିଅଟି ସବୁଜିନିଷ ସଜାଡି ଥୋଇବାକୁ ସମୟ ହେଲାନି। ତର ତର ହୋଇ ଯାଇ କବାଟ ଖୋଲିଲା। ତରତର ହୋଇ ଭିତରକୁ ପଶି ଆସିଲେ ଜଣେ ପ୍ରୌଢ଼। ବିଶେଷ ଭାବେ ଅସୁସ୍ଥ ଜଣା ପଡୁଥିଲେ।)

ପ୍ରୌଢ଼ - କବାଟ ଖୋଲିବାକୁ ଏତେ ଡେରି କଲ କାହିଁକି ? କବାଟ ଖୋଲୁ ଖୋଲୁ ମଣିଷ ବି'ତ ମରିଯାଇପାରେ।

କୁନ୍ତଳା - ଆପଣ କିଏ ?

ପ୍ରୌଢ଼ - ଆଗ ପାଣି ଗିଲାସେ ଦିଅ ମୁଁ ଔଷଧଟା ଖାଇ ନିଏ। ମୋ ଜୀବନଟା ଆଗ ବଂଚିଯାଉ ତାପରେ ସବୁ ପ୍ରଶ୍ନର ଉତ୍ତର ମୁଁ ଦେଇ ଦେବି।

(କୁନ୍ତଳା ଟେବୁଲ ଉପରେ ରଖିଥିବା ପାଣି ଗ୍ଲାସ ଟା ବଢେଇ ଦେଲା। ପ୍ରୌଢ଼ ଚେୟାରରେ ବସିପଡି ଔଷଧ ଖାଇଲେ ?

ପ୍ରୌଢ଼ - ଓଃ.......ଆପଣଙ୍କ ଯୋଗୁ ପ୍ରାଣଟା ବଂଚିଗଲା ଆଜି।

କୁନ୍ତଳା - ଆପଣଙ୍କ ପରିଚୟ ? କହିଲେନି ତ ?

ପ୍ରୌଢ଼ - (ଅନେଇଲେ ଓ ଇସାରା ଦେଇ କହିଲେ) ରୁହନ୍ତୁ ୨/୪/ଟା ନିଶ୍ୱାସ ମାରିବାକୁ ଆଗ ଦିଅନ୍ତୁ। ତାପରେ ଆପଣଙ୍କର ପାଣି ଗିଲାସେ ପାଇଁ ଆପଣଙ୍କୁ ଧନ୍ୟବାଦ ଦେବି ଆଉ ଆପଣଙ୍କର ସବୁ ପ୍ରଶ୍ନର ଯଥାଯଥ ଉତ୍ତର ଦେଇ ତା'ପରେ ମୁଁ ଏଠୁ ଯିବି। ଏତେ ତରତର କାହିଁକି। ମୋ ପାଖରେ ଏବେ ପ୍ରଚୁର ସମୟ ପଡିରହିଛି। ଆଚ୍ଛା ମୋତେ ଏତେ ଝାଳ ବୁହୁଛି କାହିଁକି କହିଲେ? ପାଟିଟା ବି' ଶୁଖି ଶୁଖି ଆସୁଛି। ବୋଧହୁଏ Suger Low ହୋଇଗଲା କି କ'ଣ ଆଚ୍ଛା ଆପଣଙ୍କ ପାଖରେ ଚିନି କିମ୍ବା ଚକୋଲେଟ ଥିବ ନିଶ୍ଚୟ, ଚଞ୍ଚଳ ଦେଲେ ଭଲ ହୁଅନ୍ତା।

କୁନ୍ତଳା - ଦେଖୁଛି। (ବ୍ୟାଗ ଦେଖି) ହଁ ଅଛି। ଏଇ ଗୋଟିଏ ଥିଲା ନିଅନ୍ତୁ।

ପ୍ରୌଢ଼ - ଏଇଟା ତ ଏ ଦେଶର ନୁହେଁ ? ବିଦେଶର ଭଳି ଲାଗୁଛି। କେଉଁଠିକାର ?

କୁନ୍ତଳା - ଆଗ ଖାଇ ଦିଅନ୍ତୁ।

ପ୍ରୌଢ଼ - (ଖାଇ) ଉଁ....Test ବି ବଢ଼ିଆ -କେଉଁଠିକାର ଦେଖିବା (କାଗଜ ପଢିଲେ) Made in dubai । ଓଃ ଦୁବାଇରୁ ଆଣିଥିଲେ ନା କିଏ Present କରିଥିଲା ?

କୁନ୍ତଳା - ଆପଣତ ଚକୋଲେଟ ଖାଇବା ଲୋକ ତା'ପଛରେ କାହାଣୀ ଖୋଜିବାର ଏତେ ଆଗ୍ରହ କାହିଁକି ?

ପ୍ରୌଢ଼ - ପିଲାଦିନେ ଆଈ ମା ମୋତେ କେତେ କେତେ କାହାଣୀ ଶୁଣାଉଥିଲା। ବାର୍ଦ୍ଧକ୍ୟରେ ସେଇ ପିଲାଦିନ କଥା ସବୁ ଆଜି ଖୁବ୍ ମନେ ପଡୁଛି। ଆଈମା ଆସନ୍ତା ତା'କୋଳରେ ମୋତେ ବସେଇ ପାକୁଆ ପାଟିରେ ଛେଞ୍ଚା କୁଟା ପାନ ଗୁଣ୍ଡ ପୁରେଇ ପରୀରାଇଜର ଗପ କହନ୍ତା ଆଉ ମୁଁ ଶୁଣନ୍ତି। କୁହନ୍ତୁନା ଆପଣଙ୍କର ଏଇ ଚକୋଲେଟର କାହାଣୀ ? (ପ୍ରୌଢ଼ ଅନେଇଲେ କୁନ୍ତଳାର ଆଖି ଯେମିତି ରାଗରେ ବିସ୍ଫାରିତ) Sorry ତା'ହେଲେ ଥାଉ ମାନେ ମୁଁ କ'ଣ କହିବାକୁ ଚାହୁଁଥିଲି କି କାଳେ ଏଇଟା କାହାର ବଂଧୁତ୍ୱର ସ୍ମୃତି ହୋଇଥିବ। ଆଉ ତାକୁ ମୁଁ ଗର୍ଭସ୍ଥ କରିଦେଇ ସେଇ ବଂଧୁତ୍ୱର ସ୍ମୃତିକୁ ଚିରଦିନ ପାଇଁ ଲିଭେଇ ଦେଇନି ତ ?

କୁନ୍ତଳା - ଭଲହେଲା। ସ୍ମୃତି ଉଜୁଡି ଗଲା। ସମ୍ପର୍କ ସବୁ ଅଚିହ୍ନା ହୋଇଗଲା ପରେ ହିଁ ତ ସ୍ମୃତି ପାଲଟି ଯାଏନା...। ଯେଉଁଠି ସମ୍ପର୍କ ଅତୀତ ହୋଇଗଲା ସେଠି ସ୍ମୃତି ବା ବର୍ତ୍ତମାନ ହୋଇ ବଂଚିରହିବ କାହିଁକି ?

ପ୍ରୌଢ଼ - ଉଁ- ଠିକ୍ କଥା... କିନ୍ତୁ ମୋ ମତରେ ସେଇ ସ୍ମୃତି ହିଁ ଉଜୁଡି ଯାଇଥିବା ସମ୍ପର୍କ ସବୁକୁ ବାରମ୍ବାର ଉଜ୍ଜିବିତ କରିପାରେ। ଏମିତିକି ସେଇ ସ୍ମୃତି ହିଁ ଭବିଷ୍ୟତରେ ହୁଏତ ବା ସେଇ ସମ୍ପର୍କ ସବୁକୁ ଆହୁରି ସୁଦୃଢ଼ କରି ଯୋଡି ଦେଇପାରେ।

କୁନ୍ତଳା - ତେଣୁ ତାକୁ ପ୍ରଥମେ ଧ୍ୱଂସ କରିଦେବା ଦରକାର।

ପ୍ରୌଢ଼ - (ହସିଲେ) ଠିକ୍ ଠିକ୍ ଦୃଶ୍ୟମାନ ସ୍ମୃତି ସବୁକୁ ସିନା ଆପଣ ନଷ୍ଟ କରିଦେବେ। କିନ୍ତୁ ଅନୁଭୂତିର ସ୍ମୃତିକୁ। ତାକୁକ'ଣ କରିବେ ? ତାକୁ ଯେତେ ମାରିବାକୁ ଚେଷ୍ଟା କରିବେ ସେ ସେତେ ବେଶୀ ଉଜାଗର ହେବ। ସେତେ ବେଶୀ କ୍ଷତାକ୍ତ କରିବେ। ଯେତେବେଶୀ ଯନ୍ତ୍ରଣା ଦେବ।

କୁନ୍ତଳା (ଥମ ଥମ ହୋଇ) ସେ କଥା ଛାଡନ୍ତୁ। ଆପଣ ଆଗ ନିଜ ପରିଚୟ ଦିଅନ୍ତୁ। ଆପଣ କିଏ। ଏମିତି ଅବେଳରେ ଏଠିକି ଆସି ମୋତେ ବିରକ୍ତ କରିବାର କାରଣ କ'ଣ ?

ପ୍ରୌଢ଼ - Oh so sorry, ମୁଁ ଆପଣଙ୍କୁ ବିରକ୍ତ କରୁଛି ଜାଣି ବହୁତ ଦୁଃଖିତ। କିନ୍ତୁ Science ର ସିଦ୍ଧାନ୍ତ ଅନୁସାରେ Same pole Repulses but unsame pole Atracts ତେଣୁ ଭାବିଲି ମୁଁ ଯେମିତି ଆପଣଙ୍କ ଭଳି ଜଣେ ସୁନ୍ଦରୀ ଯୁବତୀ ସହିତ କଥାବାର୍ତ୍ତା କରି ଆନନ୍ଦିତ ହେଉଛି ଆପଣ ମଧ୍ୟ ମୋ ଭଳି ଜଣେ ସୁନ୍ଦର ଯୁବକର ସାନିଧ ଲାଭ କରି ନିଶ୍ଚୟ ଆନନ୍ଦିତ ହେଉଥିବେ।

କୁନ୍ତଳା - ଯୁବକ, ହୁଁ?

ପ୍ରୌଢ଼ - (ନିଜକୁ ଦେଖି) ଓଃ ଆପଣ ମୋ ଚେହେରା ଦେଖି ହୁଏତ ମୋତେ ପ୍ରୌଢ଼ ଭଳି ଭାବି ପାରନ୍ତି ମାତ୍ର ମୋ ମନ, ମୋ ମୋ ଉଦ୍ଧାମତା ସବୁ, ମୋ ହୃଦୟ....।

କୁନ୍ତଳା - ପୂରା ଯୁବକ ସୁଲଭ.....।

ପ୍ରୌଢ଼ - ନା ନା ଯୁବକ ସୁଲଭ ନୁହେଁ କେବଳ ଯୁବକ ହିଁ ଯୁବକ।

କୁନ୍ତଳା - I hate you.

ପ୍ରୌଢ଼ - Me ? But why?

କୁନ୍ତଳା - ସେ ଉତ୍ତର ଦେବାକୁ ମୋର ଧୈର୍ଯ୍ୟ ନାହିଁ। ଆପଣ ନିଜର ପରିଚୟ ଦିଅନ୍ତୁ। ଆଉ କହନ୍ତୁ ଏଠିକି କାହିଁକି ଆସିଛନ୍ତି ନହେଲେ ଯାଆନ୍ତୁ। ଅନ୍ୟଥା ମୁଁ Police କୁ Phone କରିବି।

ପ୍ରୌଢ଼ - ନା ଅକାରଣରେ Police କୁ ବ୍ୟସ୍ତ କରିବେ କାହିଁକି କହିଲେ, ମୁଁ କହୁଛି ଶୁଣନ୍ତୁ। ମୋର ପରିଚୟ ସିମିତି କିଛି ଖାସ ନୁହେଁ ଯେ ମୁଁ କହିଲେ ଆପଣ ମୋତେ ଜାଣିପାରିବେ। ଆଉ ମୋର ଏଠାକୁ ଆସିବାର ଉଦ୍ଦେଶ୍ୟ ମଧ୍ୟ ଏକାନ୍ତ ଭାବେ ଅନିଚ୍ଛାକୃତ ଏବଂ ଉଦ୍ଦେଶ୍ୟ ରହିତ।

କୁନ୍ତଳା - ତଥାପି ଆସିବାର କାରଣ ତ ନିଶ୍ଚୟ କିଛିଥିବ ?

ପ୍ରୌଢ଼ - ନା ସିମିତି କିଛି ନିର୍ଦ୍ଦିଷ୍ଟ କାରଣ ନାହିଁ। ଏମିତି କୌଣସି ଅକାରଣକୁ ହିଁ ଆପଣ ଗୋଟିଏ କାରଣ ବୋଲି ଧରି ନେଇ ପାରନ୍ତି ବା ଏମିତିବି ଭାବିପାରନ୍ତି ଯେ ଔଷଧ ଖାଇବା ପାଇଁ ଟୋପାଏ ପାଣି ପାଇବା ଗୋଟିଏ କାରଣ ହୋଇପାରେ କିମ୍ବା ଏ ଘରେ ରହୁଥିବା ଜଣେ ସୁନ୍ଦରୀ ଭଦ୍ରମହିଳାଙ୍କ ପରିଚୟ ଜାଣିବା ଭଳି ଏକ ଲୋଭନୀୟ କାରଣ ବି ହୋଇଥାଇପାରେ । ଏମିତି କିଛି ବି କାରଣ ଥାଇପାରେ ବୋଲି ଆପଣ ଭାବିପାରୁଛନ୍ତି ?

କୁନ୍ତଳା - ତା'ମାନେ ପଛକୁ ପଛ ଆହୁରି ଅନେକ ଲୁକ୍କାୟିତ କାରଣ ମଧ୍ୟ ଲୁଚିଥାଇ ପାରେ ?

ପ୍ରୌଢ଼ - ହୁଏତ ବା ଥାଇପାରେ। ତେବେ ଛାଡ଼ନ୍ତୁ ସେ କଥା । (କଥା ବାଆଁରେଇ) ପାହାଡୀ ସହରଟା ଭାରି ସୁନ୍ଦର। ଠିକ୍ ଆପଣଙ୍କ ପରି।

କୁନ୍ତଳା - ତା ପରର ଶବ୍ଦ ଆଉ ବାକ୍ୟ ଗୁଡିକ କହିବା ଆଗରୁ ଆଇନା ଆଗରେ ନିଜ ଚେହେରାକୁ ଅନ୍ତତଃ ଥରେ ପରଖି ନେବା ଦରକାର।

ପ୍ରୌଢ଼ - ଆପଣଙ୍କ ଆଖିର ଭାଷାରୁ ମୋର ପ୍ରୌଢ଼ତ୍ୱ ବିଷୟରେ ମୁଁ ଯଥେଷ୍ଟ ଇସାରା ପାଇ ସାରିଛି। ତେବେ ଏକଥା କହିବି ଯେ ଏ ସହରର ସୌନ୍ଦର୍ଯ୍ୟ ସିନା ଆପଣଙ୍କ ପାଇଁ ନୂଆ ହେଲେ ଆମ ପାଇଁ ଏ ସହର ଅତି ପରିଚିତ ନହେଲେ ବି' ଅପରିଚିତ ନୁହେଁ।

କୁନ୍ତଳା - ଆମେ ମାନେ.... ଆଉ କିଏ ?

ପ୍ରୌଢ଼ - କିଏ ଆଉ ହେବ। ମୋର ପତ୍ନୀ। ୨ୟା ପତ୍ନୀ।

କୁନ୍ତଳା - ୨ୟା ପତ୍ନୀ ? ମାନେ ଆପଣ କ'ଣ ୨ଥର ବିବାହ କରିଛନ୍ତି ?

ପ୍ରୌଢ଼ - ଆପଣଙ୍କର ଏ ପ୍ରଶ୍ନ ମୋ ମନରେ ଅନେକ ପ୍ରଶ୍ନର ଝଡ଼ ସୃଷ୍ଟି କରୁଛି। ସତରେ ଯେମିତି ମୁଁ ଜଣେ କ୍ରୀମିନାଲ। ୨ୟ ପତ୍ନୀ ଗ୍ରହଣ କରି ଯେମିତି ମୁଁ ଅପରାଧ କରିଛି। ମୋ ପୂର୍ବରୁ ଏ ସଂସାରରେ ଯେମିତି କେହି ୨ୟ ପତ୍ନୀ ଗ୍ରହଣ କରିନାହାଁନ୍ତି। କିମ୍ବା ଆଗକୁ ମଧ୍ୟ କେହି ୨ୟ ପତ୍ନୀ ଗ୍ରହଣ କରିବେ ନାହିଁ। ଶୁଣନ୍ତୁ Madam ଏବେ ଏମିତି ସମୟ ଆସିଲାଣି ଯେ ଖାଲି ପୁରୁଷ ମାନେ ଆଉ ୨ୟ ପତ୍ନୀ ଗ୍ରହଣ କରୁନାହାଁନ୍ତି। ବରଂ ନାରୀମାନେ ମଧ୍ୟ ଏଣିକି ୨ୟ ପତି ଗ୍ରହଣ କରିବାକୁ ଆରମ୍ଭ କଲେଣି।

କୁନ୍ତଳା - ଜାଣେ। ତେବେ ମୋ ପ୍ରଶ୍ନ ଆପଣଙ୍କୁ ଏଇଆ ଯେ, ଆପଣଙ୍କ ପ୍ରଥମ ପତ୍ନୀଙ୍କର ଦୋଷ କ'ଣ ଥିଲା ଯେ ଆପଣ ତାଙ୍କୁ ପରିତ୍ୟାଗ କଲେ।

ପ୍ରୌଢ଼ - ନା ସେମିତି କିଛି ନୁହେଁ।

କୁନ୍ତଳା - (ରାଗି) ତା'ହେଲେ ଆପଣ ତାଙ୍କୁ ପରିତ୍ୟାଗ କଲେ କାହିଁକି ? ସେ ନିଶ୍ଚୟ ଜଣେ ସୁନ୍ଦରୀ ନାରୀ ନ ଥିଲେ ?

ପ୍ରୌଢ଼ - ନା ।

କୁନ୍ତଳା - ଧନୀ କି ସମ୍ଭ୍ରାନ୍ତ ବି ହୋଇ ନଥିବେ ?

ପ୍ରୌଢ଼ - ହୁଁ। ଆପଣ କେମିତି ଜାଣିଲେ ?

କୁନ୍ତଳା - ନିଶ୍ଚୟ ଉଚ୍ଚ ଶିକ୍ଷିତା ହୋଇନଥିବେ ?

ପ୍ରୌଢ଼ - ହୁଁ। ଆପଣ ନିଶ୍ଚୟ ଜଣେ ଦିବ୍ୟଦ୍ରଷ୍ଟା।

କୁନ୍ତଳା - ଓ.... ସେଇଥି ପାଇଁ ବୋଧହୁଏ। ଆପଣ ତାଙ୍କୁ ପ୍ରତ୍ୟାଖ୍ୟାନ କଲେ ନୁହେଁକି ?

ପ୍ରୌଢ଼ - ଆପଣ ଅଯଥାରେ ଏମିତି ଉତ୍ତେଜିତ ହୋଇ ପଡୁଛନ୍ତି କାହିଁକି ?

କୁନ୍ତଳା - ମୁଁ ଜାଣେ ଏଇ ପୁରୁଷ ପ୍ରଧାନ ସମାଜରେ ଆପଣମାନଙ୍କ ଭଳି ପୁରୁଷମାନେ ହିଁ ଜଣେ ଜଣେ କଳଙ୍କ।

ପ୍ରୌଢ଼ - ଠିକ୍ କହିଛନ୍ତି ଆପଣ। କେବଳ ସେଇଥିପାଇଁ ଅତି ସହଜରେ ମୁଁ ପ୍ରତ୍ୟାଖ୍ୟାତ ହୋଇଗଲି।

କୁନ୍ତଳା - (ରହିଯାଇ) (ଆଶ୍ଚର୍ଯ୍ୟରେ) କ'ଣ କହିଲେ ?

ପ୍ରୌଢ଼ା - ହିଁ। ଅତିଅନାୟାସରେ ତାଙ୍କ ଦ୍ୱାରା ମୁଁ ପ୍ରତାରିତ ହୋଇଛି।

କୁନ୍ତଳା - କାରଣ.....

ପ୍ରୌଢ଼ା - କାରଣ ଜଣାଇବାକୁ ମୁଁ କେବେବି ତାଙ୍କୁ ବାଧ କରିନି କିମ୍ବା ତାହା ଜଣାଇବାର ଆବଶ୍ୟକତା ମଧ ସେ କେବେ ଉପଲବ୍ଧି କରି ନାହାଁନ୍ତି। ତେଣୁ ପ୍ରକୃତ କାରଣ ସବୁ ଆଜି ବି ମୋ ପାଇଁ ଅଜଣା। ତଥାପି ମୋ ପାଇଁ ମୁଁ ସେଇ କାରଣ ସବୁକୁ ଖୋଜି ନେଇଛି ଆଉ ଆଦରି ନେଇଛି। ଯାହା ଯେମିତି ମୋତେ ସୁହାଇଛି।

କୁନ୍ତଳା - ସେ ସବୁ କାରଣ କହିବାରେ କିଛି ଆପତ୍ତି ଅଛିକି ?

ପ୍ରୌଢ଼ - ଆଃ । ପୁଣି ସେଇ ସ୍ମୃତିର ରୋମନ୍ଥନ।

କୁନ୍ତଳା - ଖୁବ୍ ଯନ୍ତ୍ରଣାଦାୟକ ନୁହେଁ? ତା'ହେଲେ ଥାଉ।

ପ୍ରୌଢ଼ - ନିଆଁରେ ନ ପୋଡି କ'ଣ କେବେ ସୁନାର ଗହଣା ତିଆରି କରାଯାଇ ପାରେ ?

କୁନ୍ତଳା - କିନ୍ତୁ ଜୀବନ ଯନ୍ତ୍ରଣା ଯେ ବେଳେବେଳେ ଦୁର୍ବିଷହ ହୋଇ ଉଠେ।

ପ୍ରୌଢ଼ - ସେଇ ଯନ୍ତ୍ରଣାର ଢେଉ ଭିତରେ ହିଁ ତ ସୁନାର ସଂସାର ଗଢିଉଠେ। ସ୍ୱର୍ଗର ସୁଖ ବି ମିଳେ।

କୁନ୍ତଳା - ଆପଣଙ୍କର କ'ଣ କେବେ ତାଙ୍କ ଉପରେ ରାଗ ହୁଏନା। ପ୍ରତିଶୋଧ ନେବାର ଇଚ୍ଛା ହୁଏ ନା ?

ପ୍ରୌଢ଼ - ପ୍ରଥମେ ପ୍ରଥମେ ହେଉଥିଲା, ଏବେ କିନ୍ତୁ ହୁଏନା।

କୁନ୍ତଳା - କାହିଁକି ?

ପ୍ରୌଢ଼ - ମୁଁ ବୁଝି ନେଇଛି ଯେ। ମୋ ଦୃଷ୍ଟି କୋଣ ଆଉ ତାଙ୍କର ଦୃଷ୍ଟି କୋଣ ଯଥେଷ୍ଟ ଭିନ୍ନଥିଲା। ହୁଏତ ସେଇ ସବୁ କାରଣରୁ ତାଙ୍କର ଯୁକ୍ତି ସବୁ ଯୁକ୍ତି ସଂଗତ ଥିଲା। କାରଣ ସେ ଥିଲେ ସମ୍ଭ୍ରାନ୍ତ, ଉଚ୍ଚ ଶିକ୍ଷିତ, ପ୍ରତିପତି ସମ୍ପନ୍ନ, ଆଭିଜାତ୍ୟ ପରିବାରର । ଅଥଚ ମୁଁ ଥିଲି ସାଧାରଣ, ଅତି ସାଧାରଣ ଭାବେ ସରଳ, ଅର୍ଦ୍ଧଶିକ୍ଷିତ, ଅର୍ଦ୍ଧମାର୍ଜିତ । ତଥାପି ନିଜର ଏକ ଜିଦ୍‌ରେ ସେ ମୋତେ ବିବାହ କଲେ। ଆଉ ଅତି ଅସାଧାରଣ ଭାବେ ନିଜର ସେଇ ଜିଦ୍‌ରେ ମୋତେ ପ୍ରତ୍ୟାଖ୍ୟାନ ମଧ କରିଦେଲେ।

କୁନ୍ତଳା - ଆପଣ ପ୍ରତିବାଦ କଲେନାହିଁ। ପ୍ରତିଶୋଧ ନେଲେନାହିଁ। ନିର୍ବିବାଦରେ ପରାଜୟ ସ୍ୱୀକାର କରିନେଲେ। କାପୁରୁଷ।

ପ୍ରୌଢ଼ - କ'ଣ କହିଲେ କାପୁରୁଷ। (ହସିଲେ) ମୋ ଉତ୍ତରକୁ ଅପେକ୍ଷା ନ କରି, ମୋତେ କାପୁରୁଷର ଉପାଧି ଦେଇଦେଲେ ନା ?

କୁନ୍ତଳା - ନୁହେଁ ତ ଆଉ କ'ଣ ? ମୁଁ କ'ଣ ଭୁଲ କହିଲି।

ପ୍ରୌଢ଼ - କେଜାଣି-କେମିତି କହିବି ? ହୁଏତ ବା ଠିକ୍ କହିଲେ।

କୁନ୍ତଳା - ଆପଣ ନିଜେ ଏମିତି ନିଃଷ୍କ୍ରୀୟ ହୋଇ ରହିପାରିଲେ କିପରି ?

ପ୍ରୌଢ଼ - ନା। ସମ୍ପୂର୍ଣ୍ଣ ନିଷ୍କ୍ରୀୟ ନୁହେଁ ବରଂ ମୁଁ ପ୍ରତିବାଦ କରିଥିଲି। ପ୍ରତିଶୋଧ ମଧ ନେଲି। କେବଳ ସେତିକି ନୁହେଁ ମୋ ଭାଷାରେ ବିଜୟୀ ମଧ ହେଲି। କିନ୍ତୁ ସେଥିପାଇଁ ମୋତେ ଏକ ଦୀର୍ଘ ପ୍ରତୀକ୍ଷା କରିବାକୁ ପଡିଲା। ସେଇ ପ୍ରତୀକ୍ଷାର ପ୍ରତିଧ୍ୱନୀରେ ମୁଁ ଜର୍ଜରିତ ମଧ ହେଲି। ପ୍ରତିଶୋଧ ନେବାର ପ୍ରୟାସରେ ନିଜେ ପ୍ରଜ୍ୱଳିତ ହେଲି। ବିଜୟୀ ହେବାର ନିଶାରେ ନିଜେ ପରାହତ ହେଲି।

କୁନ୍ତଳା - ବୁଝିପାରିଲି ନାହିଁ। ଯାହା କହିବାକୁ ଚାହାଁନ୍ତି, ସ୍ପଷ୍ଟ ସ୍ୱରରେ କହନ୍ତୁ।

ପ୍ରୌଢ଼ - ପାହାଡ ସାମ୍ନାରେ ଠିଆ ହୋଇ ଚିତ୍କାର କଲେ ତା'ର ପ୍ରତିଧ୍ୱନୀ ନିଜକୁ ଜର୍ଜରିତ କରେ। ସମୁଦ୍ରର ଉତ୍ତାଳ ଅଶାନ୍ତ ଢେଉ ଉପରେ ପ୍ରତିଶୋଧ ନେବାକୁ ଚାହିଁଲେ ନିଜକୁ ହିଁ ପରାଭବ ଭୋଗିବାକୁ ପଡେ। କ୍ରୋଧ ଆଉ ଇର୍ଷାର ଅଗ୍ନିକୁ ଲମ୍ଫ ପ୍ରଦାନ କଲେ ପତଙ୍ଗଭଳି ନିଜକୁ ହିଁ ଜଳିପୋଡି ଭସ୍ମ ହେବାକୁ ପଡେ।

କୁନ୍ତଳା - ତାହେଲେ ଆପଣ କଲେ କ'ଣ ?

ପ୍ରୌଢ଼ - ପ୍ରତିଶୋଧ ନେବାର ଭିନ୍ନ ଏକ ପଥ ମୁଁ ଆବିଷ୍କାର କଲି। ସେଇ ପଥରେ ଅଗ୍ରସର ହୋଇ ଆଜି ମୁଁ ନିଃସଙ୍କୋଚରେ ଘୋଷଣାକରି ପାରିବଯେ ମୁଁ ବିଜୟୀ ହୋଇପାରିଛି।

କୁନ୍ତଳା - କ'ଣ ସେଇ ରାସ୍ତା...

ପ୍ରୌଢ଼ - ରାସ୍ତା ? କେଉଁ ରାସ୍ତା... ? ଏଇ ପାହାଡିଆ ସହରର ସବୁ ରାସ୍ତା ବିପଦ ସଂକୁଳ। ଗୋଟିଏ ପଟେ ତୀକ୍ଷ୍ଣ ପାହାଡର ନଗ୍ନଶିଳାର ପ୍ରାଚୀର ଅନ୍ୟପଟେ ଖରସ୍ରୋତାନଦୀର ତୀକ୍ଷ୍ଣ ଖାଇ।

କୁନ୍ତଳା - ନା ସେ ପଥ ନୁହେଁ। ପ୍ରତିଶୋଧର ସେ ଭିନ୍ନ ପଥ କଥା ମୁଁ ପଚାରୁଛି।

ପ୍ରୌଢ଼ - ଓ ପ୍ରତିଶୋଧ ? ହଁ....ଆଚ୍ଛା ଆଉଟିକିଏ ପାଣି ମିଳିପାରିବକି। ତଣ୍ଟି ଶୁଖିଆସୁଛି।
(କୁନ୍ତଳା ପାଣି ଆଣିବାକୁ ଗଲା ପ୍ରୌଢ଼ ଘର ତନ୍ନତନ୍ନ ଖୋଜି ବୁଲିଲେ ଦୌଡିଟା ଦେଖି ତାକୁ ଆଣିବାକୁ ଚାହୁଁଥିଲେ ପଶି ଆସିଲେ କୁନ୍ତଳା। କୁନ୍ତଳାକୁ ଦେଖି ପ୍ରଥମେ ଚିତ୍କାର କଲେ ପୁଣି ହସିଉଠିଲେ ପ୍ରୌଢ଼)

କୁନ୍ତଳା - ହସିଲେ କାହିଁକି ?

ପ୍ରୌଢ଼ - ଏଇ ଦୌଡି ଖଣ୍ଡିକ। ଏହାର ବା ଏଠି ଆବଶ୍ୟକତା କ'ଣ ଥିଲା ? ଏଇଟା ତ ଏଠି ଏଇ ଘର ଭିତରେ ଆଦୌ ପ୍ରାସଙ୍ଗିକ ମନେ ହେଉନାହିଁ।

କୁନ୍ତଳା - (ଥଥ ମମ ହୋଇ) ଲୁଗା ଶୁଖାଇବାର ଏଇ ଦୌଡିଟା।

ପ୍ରୌଢ଼ - ଏହାର ଆକାର ପ୍ରକାର ଦେଖିଲେତ ଏଇଟା ଲୁଗା ଶୁଖେଇବା ଅପେକ୍ଷା କୂଅରୁ ପାଣି ବାହାର କରିବାରେ ବେଶୀ ଉପଯୋଗୀ ହେଲାଭଳି ଲାଗୁଛି। ଆଉ ମୋ ଜାଣିବାରେ ପର୍ବତର ଏଇ ଶିଖର ଦେଶରେ ଥିବା ଏଇ କ୍ଷୁଦ୍ର ସହରଟିରେ କୂଅର ବ୍ୟବହାରତ କେଉଁଠି ହେବାର ମୁଁ ଦେଖିନାହିଁ।

କୁନ୍ତଳା - ସତ କଥା ତ ! ଏଠିକି ଏଦୌଡିଟା ବା ଆସିଲା କେମିତି ?

ପ୍ରୌଢ଼ - ଏକା ଏକା ତ ସେ ଏଠାକୁ କେବେବି ଆସି ପାରିବ ନାହିଁ । ଏହାକୁ କିଏ ଜଣେ ଏଠାକୁ ଆଣିଥିବ ନିଶ୍ଚୟ। ମାତ୍ର ବିନା କାରଣରେ କିଏ ବା ଏହାକୁ ଆଣିବ କାହିଁକି।

କୁନ୍ତଳା - ତା'ପଛରେ ବିଶେଷ କାରଣ କିଛି ହୁଏତ ବା ଥାଇ ନପାରେ।

ପ୍ରୌଢ଼ - ମୁଁ କିନ୍ତୁ ଅକସ୍ମାତ ତାକୁ ଦେଖି ଚମକି ପଡିଲି ତେଣୁ ଚିତ୍କାର କରିଥିଲି।

କୁନ୍ତଳା - ଏହା ପୂର୍ବରୁ ଆପଣ କ'ଣ କେବେ ଦୌଡି ଦେଖିନଥିଲେ ?

ପ୍ରୌଢ଼ - ଦେଖିଥିଲି। କିନ୍ତୁ କ୍ଷଣିକ ପାଇଁ ମୋ ଅଜାଣତରେ ତର୍କ ଶାସ୍ତ୍ରର ସେଇ ନ୍ୟାୟଭଳି ମୁହୂର୍ତ୍ତକ ପାଇଁ ମିଥ୍ୟା ସତ୍ୟରେ ଉଦ୍‌ଭାସିତ ହୋଇ ମୋତେ ସର୍ପର ଉପସ୍ଥିତିକୁ ସକ୍ରୀୟ କରିଦେଇଥିଲା। ମାତ୍ର ପରେ ତାହାର ସ୍ୱରୂପ ଜାଣିପାରି ନିଜର ମୂର୍ଖତା ଉପରେ ହସିବାକୁ ବାଧ ହୋଇଥିଲି।

କୁନ୍ତଳା - ଜୀବନର ସବୁ ସତ୍ୟ ବେଳେବେଳେ ଏମିତି ପ୍ରହେଳିକା ରେ ପରିଣତ ହୋଇଯାଏ।

ପ୍ରୌଢ଼ - ସେତେବେଳେ ନିଜେ ନିଜ ଉପରେ ପ୍ରତିଶୋଧ ନନେଇ ବରଂ ମୋରି ଭଳି ହସିବା ଉଚିତ ? ନିଜକୁ ଧିକ୍କାର କରିବା ଉଚିତ।

କୁନ୍ତଳା - ଜୀବନ ସହିତ ଏଇ ଦଉଡ଼ିର ସମ୍ପର୍କ ବା କ'ଣ ? ସାମଞ୍ଜସ୍ୟ ବା କେତେ ?

ପ୍ରୌଢ଼ - ବୟସର ତାରତମ୍ୟକୁ ଦେଖିଲେ ଏକଥା ସ୍ପଷ୍ଟ ଯେ ସମ୍ପର୍କର ଅନ୍ଧ ପୁଟୁଳି ଖେଳ ମୋ ଠାରୁ ଆମେ ଅଧିକ ଖେଳିବାର ସୁଯୋଗ କେବେ ପାଇନଥିବେ ନା ସମୟର କଷଟି ପଥରରେ ତାକୁ ଘସି ମାଜି ତଉଳିବାର ପ୍ରୟାସ କରିବାର ଅଧିକ ଅବସର ମଧ ମିଳି ଥିବ ଆପଣଙ୍କୁ କିନ୍ତୁ ମୁଁ ଜାଣେ ଏଇ କୂଅ ଦଉଡି ଭଳି ଆମର ଜୀବନ ନିଜ ନିଜର ମହତ୍ତ୍ୱାକାଂକ୍ଷାଂକୁ ଚରିତାର୍ଥ କରିବାକୁ ଯାଇ ସେ ସର୍ପଭଳି ସର୍ପିଳ ଗତିରେ ଧାଇଁବାକୁ ଆରମ୍ଭ କରେ। କ୍ଷୀପ୍ର ରୁକ୍ଷୀପ୍ରତର ଗତିରେ।

କୁନ୍ତଳା - ସେଇ କ୍ଷୀପ୍ରଗତି ତାକୁ ଗାଁରୁ ସହର ଆଉ ସହରରୁ ନଗରକୁ ରାସ୍ତା କଢେଇ ନେଇଯାଏ।

ପ୍ରୌଢ଼ - ଚଲାପଥରେ ସେଇ ସରିସୃପ ଜାଣିଜାଣି କିମ୍ବା ନିଜ ଅଜାଣତରେ କେତେ କେତେ ସମ୍ପର୍କକୁ ଦଂଶନ କରିଯାଏ ଆଉ କେତେ କେତେ ସମ୍ପର୍କକୁ ତା'ରି ନାଗଫାଶରେ ଆଲିଙ୍ଗନ କରି ଧରାଶାୟୀ କରାଏ ତା'ର ହିସାବ ରଖେନା।

କୁନ୍ତଳା - ସେଇ ସମ୍ପର୍କର ନାଗ ଫାଶ ସବୁକୁ କ'ଣ ପ୍ରେମର ଫାଶରେ ରୁପାନ୍ତରିତ କରି ହେବନାହିଁ।

ପ୍ରୌଢ଼ - ନା.... କେବେ ନୁହେଁ।

କୁନ୍ତଳା - କାହିଁକି।

ପ୍ରୌଢ଼ - ବିନା ଗଣ୍ଠି ପକେଇ କୌଣସି ଦୌଡ଼ିକୁ କ'ଣ କେବେ ଫାଶୀ ଦୌଡ଼ିରେ ରୂପାନ୍ତରିତ କରାଯାଇ ପାରିବ...

କୁନ୍ତଳା - ନା...

ପ୍ରୌଢ଼ - ସେମିତି ପ୍ରେମର ଦୌଡ଼ିକୁ କେବେ ବି ନାଗ ଫାଶ ରେ ପରିଣତ କରାଯାଇ ପାରିବନି। କାରଣ ପ୍ରେମରେ ଗଣ୍ଠି ପକାଇବା ଅସମ୍ଭବ। ସେଇଥିପାଇଁ ଆମର ଶାସ୍ତ୍ର ପୁରାଣ, ଆଉ ସଂସ୍କୃତିର ଇତିହାସରେ ଥିବା ଅସଂଖ୍ୟ ପ୍ରେମଗାଥାରେ କେଉଁଠି ହତ୍ୟା ଆଉ ଆତ୍ମହତ୍ୟାର ଉଦାହରଣ ଦେଖିବାକୁ ମିଳେନା । ମିଳେ କେବଳ ଆତ୍ମତ୍ୟାଗର ଗାଥା, ଆତ୍ମ ବଳୀଦାନର କଥା। ତେବେ ହଁ। ସେଇ ନାଗ ଫାଶକୁ ଯଦି କେତେବେଳେ କେମିତି ଫାଶ ମୁକ୍ତ କରି ସହଜ ସରଳ କରି ଦିଆଯାଇ ପାରେ, ତା'ହେଲେ ତାହା ପ୍ରେମରେ ରୂପାନ୍ତରିତ ହୋଇପାରେ।

କୁନ୍ତଳା - ତା'ହେଲେ ସତ୍ୟ ଉପରେ ଅସତ୍ୟର ବିଜୟକୁ ଆମେ କ'ଣ ବାଟ ଛାଡ଼ିଦେବା ?

ପ୍ରୌଢ଼ - ସମାଜ ଆଉ ସମାଜ ସଂସ୍କାର ପାଇଁ ପ୍ରତ୍ୟେକମଣିଷ ଅନ୍ୟାୟ ବିରୁଦ୍ଧରେ ନିଜର ସ୍ୱର ଉତ୍ତୋଳନ କରିବା ଦରକାର । ତେବେ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ଏମିତି ଦୌଡ଼ିର ବା ଆବଶ୍ୟକତା କ'ଣ ? ପ୍ରେମ ଆଉ ପ୍ରତାରଣା, ଉଭୟତ ଶାନ୍ତି ଆଉ ଯୁଦ୍ଧ ଭଳି, ଦିନ ଆଉ ରାତି ଭଳି, ସତ୍ୟ ଆଉ ମିଥ୍ୟା ଭଳି ପରସ୍ପରର ପରିପୂରକ - ଆଜି ନୁହେଁ, ଅନାଦି ଅନନ୍ତ କାଳରୁ।

କୁନ୍ତଳା - ତଥାପି ତାକୁ ପ୍ରତିରୋଧ କରିବା ଆମର କର୍ତ୍ତବ୍ୟ, ପ୍ରତିକାର ଆମର ଅଧିକାର।

ପ୍ରୌଢ଼ - ତା'ର ପ୍ରତିକାରର କିମ୍ବା ପ୍ରତିରୋଧ କରିବାପାଇଁ ଅସ୍ତ୍ର କିମ୍ବା ହତିଆରର ଆବଶ୍ୟକତା କ'ଣ ? ହତ୍ୟା କିମ୍ବା ଆତ୍ମହତ୍ୟାର ପ୍ରୟୋଜନ କ'ଣ ? ଏହା କେବଳ ଜଣେ ଅଧମ ବ୍ୟକ୍ତିର ପ୍ରତିକ୍ରୀୟା ଆଉ ମୋ ଜାଣିବାରେ ଆପଣ ସେମିତି ଜଣେ ଅଧମ ବ୍ୟକ୍ତିତ୍ୱ ତ ନୁହଁନ୍ତି।

କୁନ୍ତଳା - ଆପଣ ମୋତେ ଜାଣିଲେ କେମିତି ? ଆପଣ କ'ଣ ସର୍ବଜ୍ଞ ?

ପ୍ରୌଢ଼ - ଆପଣଙ୍କର ବେଶଭୂଷା କଥାବାର୍ତ୍ତାରୁ।

କୁନ୍ତଳା - ଖାଲିଆଖିରେ ଦେଖାଯାଉଥିବା ସତ୍ୟ ସବୁ ସତ୍ୟ ହୋଇ ନପାରେ। ଯେମିତି ମରିଚିକା। ଯେମିତି ସାପ ଆଉ ଦୌଡିର ଖେଳ।

ପ୍ରୌଢ଼ - ଯେମିତି ଏଇ ଦୌଡି, ଆଉ ଏଇ ଛୁରି.....

କୁନ୍ତଳା - ଆପଣଙ୍କ ଭାଷାରେ ମୁଁ ତାହେଲେ କେଉଁ ସ୍ତରରମଣିଷ ?

ପ୍ରୌଢ଼ - ମଧ୍ୟମ ସ୍ତରର, ଠିକ୍ ପୋଡ ପିଠା ଭଳି, ଆପଣଙ୍କ ଉପରେ ଅନେକ ସାମାଜିକ କର୍ତ୍ତବ୍ୟ ଓ ଦାୟିତ୍ୱ। ଆପଣଙ୍କ ତଳେ ସମାଜର ଅନେକ ମଣିଷ ଆପଣଙ୍କ କୃତିତ୍ୱକୁ ପୁଞ୍ଜି କରି ଆଗେଇ ଯିବାର ପ୍ରେରଣା ପାଉଛନ୍ତି। ସେମାନଙ୍କ ଆଶା ଓ ସମ୍ଭାବନାର ପ୍ରତୀକାତ୍ମକ ପ୍ରତିମୂର୍ତ୍ତି ହେଉଛନ୍ତି ଆପଣ। ଏଣୁ ଆପଣ ନିଜକୁ ଗୋଟିଏ ଛୋଟିଆ "ମୁଁ ର ଗଣ୍ଡି ଭିତରେ ବାନ୍ଧି ରଖିବା ଅନ୍ୟାୟ। (ଟେବୁଲ ଉପରର ଶିଶିକୁଦେଖି) ଏଇଟା ବୋଧ ହୁଏ ନିଜ ଔଷଧ ? ଆପଣ କ'ଣ ସବୁଦିନ ନିଦ ଔଷଧ ଖାଇ ଶୁଅନ୍ତି ? ଏଇଟା କିନ୍ତୁ ଭଲ କଥା ନୁହେଁ।

କୁନ୍ତଳା - ନା ପ୍ରତିଦିନ ନୁହେଁ। ତେବେ ନିଦ ନହେଲେ ଖାଇବାକୁ ପଡେ।

ପ୍ରୌଢ଼ - କ୍ରମେ କ୍ରମେ ଆପଣ Adicted ହୋଇଯିବେ ଯେ ମୋ ସ୍ତ୍ରୀ ଭଳି। ଦୁଇଦିନ ହେଲା ନିଦ ଔଷଧ ସରିଯାଇଛି ଆଉ ଏଠି ବିନା Preseription ରେ ନିଦ ଔଷଧ କେହିଦୋକନି ଦେବାକୁ ରାଜି ହେଉ ନାହାଁନ୍ତି ? ଆପଣ କେମିତି ପାଇଲେ ?

କୁନ୍ତଳା - ମୁଁ ନେଇ ଆସିଥିଲି।

ପ୍ରୌଢ଼ - ଦୟାକରି ମୋତେ କିଛି ଦିଅନ୍ତେ ନାହିଁ। ନହେଲେ ଆଜିରାତି ମଧ ମୋତେ ଅନିଦ୍ରା ରହିବାକୁ ପଡିବ।

କୁନ୍ତଳା - ନିଦ ଔଷଧ ସେ ନଖାଇଲେ ଆପଣ ଶୋଇ ପାରିବେନି କାହିଁକି ?

ପ୍ରୌଢ଼ - ସେ ଜାହିଁ ରହିବେ ଆଉ ମୋତେ ମଧ ଶୁଆଇ ଦେବେ ନାହିଁ। ଜବରଦସ୍ତି କରି ମୋ ହାତରେ କଲମ ଧରାଇଦେଇ କହିବେ ଲେଖ। ଆଉ ଆଜ୍ଞାଧିନ ଭଳି ସମ୍ମୋହିତ ହୋଇ ମୁଁ ଲେଖି ଚାଲିବି ସାରାରାତି ?

କୁନ୍ତଳା - କ'ଣ ସବୁ ଲେଖନ୍ତି।

ପ୍ରୌଢ଼ - ଯାହା ସେ ଡାକନ୍ତି, କେତେବେଳେ, କବିତା ତ କେତେବେଳେ ଗଳ୍ପ, ଉପନ୍ୟାସ, ନାଟକ।

କୁନ୍ତଳା - ବାଃ ଚମ୍ତକାର କିନ୍ତୁ ସେ ବି ତ ନିଜେ ଲେଖି ପାରନ୍ତେ ?

ପ୍ରୌଢ଼ - ହଁ ପାରନ୍ତେ ? କିନ୍ତୁ ଲେଖନ୍ତି ନାହିଁ। ମୋତେ ବାଧ କରନ୍ତି।

କୁନ୍ତଳା - କାହିଁକି ?

ପ୍ରୌଢ଼ - ଠିକ୍ ମହାକବି ବ୍ୟାସଦେବ, ଶ୍ରୀଗଣେଶ ମହାପ୍ରଭୁଙ୍କୁ ଲେଖିବା ପାଇଁ ବାଧ କଲାଭଳି।

କୁନ୍ତଳା - Very Intersting ତାଙ୍କ ଲେଖାରୁ ଗୋଟିଏ ଦିଟା ଗପ କୁହନ୍ତୁନା....

ପ୍ରୌଢ଼ - (କଥା ବୁଲାଇବାର ଚେଷ୍ଟା କରି କାଶିଲେ) ଆଉ ଗିଲାସେ ପାଣି ମିଳିବକି ?

କୁନ୍ତଳା - ନିଶ୍ଚୟ (ଚାଲିଗଲା)

ପ୍ରୌଢ଼ - ଏଇ ନିଦ ଔଷଧ ମୁଁ ନେଇ ପାରିବି ତ ?

କୁନ୍ତଳା - (ଭିତରୁ) ହଁ ହଁ ନିଅନ୍ତୁ। କିନ୍ତୁ ମୋତେ ଗପ ଶୁଣାଇବାକୁ ପଡିବ।

ପ୍ରୌଢ଼ - ଠିକ୍ ଅଛି ତାଙ୍କୁ ଶୁଆଇ ଦେଲାପରେ ଗପ ଖାତା ଧରି ମୁଁ ଆସିବି। ଅଧରାତିରେ। କବାଟ ଖୋଲା ରଖିଥିବେ।

କୁନ୍ତଳା - (ପ୍ରବେଶ କଲେ) (ଥଥମମ) ନାଇଁ । ଅଧରାତିରେ କାହିଁକି କଷ୍ଟକରିବେ, କାଲିସକାଳୁ ଆସିଲେ ଚଳିବ।

ପ୍ରୌଢ଼ - କାଲିର ସକାଳ ହେବା ପୂର୍ବରୁ ଯଦିଏ ରାତି ଚିରନିଦ୍ରାରେ ଶୋଇଯାଏ....।

କୁନ୍ତଳା - କ'ଣ ଆପଣ କହିବାକୁ ଚାହାଁନ୍ତି।

ପ୍ରୌଢ଼ - (ପାଣି ପିଇଲେ) (କଥା ବଦଳାଇ) ନାଇଁ ମାନେ ସନ୍ଧ୍ୟାରେ ପ୍ରତିଦିନ ମୋର ଚା' ପିଇବାର ଅଭ୍ୟାସ।

କୁନ୍ତଳା - ଭଲକଥା ମୋର ବି'ଚା ପିଇବାକୁ ଇଚ୍ଛାହେଉଛି । ଯାଉଛି ଚା' ବନାଉଛି। ଚା'ରେ କେତେ ଚିନି ନା ବିନା ଚିନି। (ଭିତରକୁ ପ୍ରସ୍ଥାନ)

ପ୍ରୌଢ଼ - ବିନା ଚିନି ହେଲେ ଭଲ। କିନ୍ତୁ ପ୍ଲେଟରେ କେତେଖଣ୍ଡ ବିସ୍କୁଟ ପଡିଥିଲେ ଚା' ପିଇବାଟା ଜମିଯାଆନ୍ତା।

କୁନ୍ତଳା - ହଉ ହଉ (ପ୍ରୌଢ଼ ଚିଠିଟି ପଢିଲେ, ବୋତଲରୁ ସବୁ ଔଷଧ ବାହାର କରି ନେଇ ପକେଟରେ ରଖିଲେ?

ପ୍ରୌଢ଼ - ଆପଣ କ'ଣ ଗଳ୍ପ, କବିତା ପଢନ୍ତି ?

କୁନ୍ତଳା - (ଭିତରୁ) ସମୟ ପାଇଲେ ପଢେ।

ପ୍ରୌଢ଼ - ନାଟକ ପଢିଛନ୍ତି... ?

କୁନ୍ତଳା - ହଁ। (ପ୍ରବେଶ) (ଦେଲେ)

ପ୍ରୌଢ଼ - କାଳିଦାସଙ୍କର ଶକୁନ୍ତଳା ପଢିଛନ୍ତି?

କୁନ୍ତଳା - ହଁ ପଢିଛି। କଲେଜରେ ପାଠପଢା ବେଳେ ପଢିଛି, Syllabus ରେ ଥିଲା

ପ୍ରୌଢ଼ - କେମିତି ଲାଗିଲା ?

କୁନ୍ତଳା - ସେତେବେଳର ଅନୁଭୂତି ଆଉ ଆଜିର ଅନୁଭୂତି ପୂରା ବିପରିତ।

ପ୍ରୌଢ଼ - ସ୍ୱାଭାବିକ ! ଯୁବକ ସମୟରେ ମୁଁ ବି ଚିନିଖାଉଥିଲି ପ୍ରଚୁର- ଏବେ ଚିନି ନାଁ ଶୁଣିଲେ ଡରଲାଗୁଛି।

କୁନ୍ତଳା - ଶକୁନ୍ତଳା ଆଉ ଆମଭଳି ସାମାନ୍ୟ ଝିଅ ମାନଙ୍କ ଭିତରେ ପ୍ରଭେଦ ଅନେକ?

ପ୍ରୌଢ଼ - ସାମଞ୍ଜସ୍ୟ ବି ତ ଅନେକ ଅଛି।

କୁନ୍ତଳା - ମୋ ମତରେ ଲେଖକ ଶକୁନ୍ତଳା ପ୍ରତି ଅନ୍ୟାୟ କରିଛନ୍ତି।

ପ୍ରୌଢ଼ - ତଥାପି... ତଥାପି..... ପରପ୍ରେମ ଦେଖି ନିଜ ପ୍ରେମ ସଦା ହୋଇଥାଏ ଆନ୍ଦୋଳିତ।

କୁନ୍ତଳା - ନିଜକୁ ଶକୁନ୍ତଳା ସହିତ ତୁଳନା କରିବା ମୁର୍ଖତା। ଖାଲି ମୁର୍ଖତା ନୁହେଁ ଅପ୍ରାସଙ୍ଗିକ ମଧ୍ୟ।

ପ୍ରୌଢ଼ - ଠିକ୍ କଥା। କାରଣ ସେ ଜଣେ ଉତ୍ତମ ଚରିତ୍ରର ନାୟୀକା ଅତଏବ ଶକୁନ୍ତଳା ହେବା ପାଇଁ ନିଜକୁ ମଧ୍ୟ ଉତ୍ତମ ଚରିତ୍ରକୁ ଉତ୍ତରଣର ଆବଶ୍ୟକତା ଅଛି।

କୁନ୍ତଳା - ନିର୍ଯ୍ୟାତିତା, ପରିତ୍ୟକ୍ତା, ପତିତା ହେବାପରେ ଆତ୍ମୋତ୍ତରଣର ଆବଶ୍ୟକତା କ'ଣ ବା ଅଛି।

ପ୍ରୌଢ଼ - ଏଇନେ ପରା ପ୍ରତିଶୋଧର କଥା କହୁଥିଲେ?

କୁନ୍ତଳା - ପ୍ରତିଶୋଧ ଆଉ ଉତ୍ତରଣ ମଧ୍ୟରେ ସମ୍ପର୍କ କ'ଣ?

ପ୍ରୌଢ଼ - ଅଛି?

କୁନ୍ତଳା - ପ୍ରତିଶୋଧ ପରିହାସର ବିଷୟବସ୍ତୁ ନୁହେଁ।

ପ୍ରୌଢ଼ - ଆତ୍ମୋତ୍ତରଣ ମଧ୍ୟ ପରିହାସର ବସ୍ତୁ ନୁହେଁ କିମ୍ବା ସହଜଲବ୍ଧ ମଧ୍ୟ ନୁହେଁ।

କୁନ୍ତଳା - ଆତ୍ମୋତ୍ତରଣ ମାଧ୍ୟମରେ ପ୍ରତିଶୋଧର କଥା ତ ମୁଁ କେବେ ଜାଣି ନାହିଁ କି ଶୁଣିନାହିଁ।

ପ୍ରୌଢ଼ - ଅଥଚ ଜୀବନ ସାରା ଖାଲି ଅନ୍ୟମାନଙ୍କ ଉପରେ ପ୍ରତିଶୋଧ ନେଇ ଚାଲିଛନ୍ତି ଆଜି ପର୍ଯ୍ୟନ୍ତ।

କୁନ୍ତଳା - କିଏ ମୁଁ? ପୁଣି ପ୍ରତିଶୋଧ.... ମିଛକଥା..

ପ୍ରୌଢ଼ - ମନେପକାନ୍ତୁ । ପିଲାଦିନେ ଝିଅପିଲା ବୋଲି, ସମାଜରେ ନାନାଭାବେ ସମାଲୋଚନା ଆଉ ତିରସ୍କାରର ଶରବ୍ୟ ହୋଇଥିବେ ନିଶ୍ଚୟ।

କୁନ୍ତଳା - କେବଳ ମୁଁ କାହିଁକି ମୋ ଭଳି ପ୍ରାୟ ପ୍ରତ୍ୟେକ ଝିଅ ଆମ ସମାଜ ବ୍ୟବସ୍ଥା ଦ୍ୱାରା ନାନାଭାବରେ ଶୋଷିତ ହୋଇଥିବ ବୋଲି ମୋର ବିଶ୍ୱାସ।

ପ୍ରୌଢ଼ - ସେତେବେଳେ ତ ଆପଣ ହାରିଯାଇ ନାହାଁନ୍ତି। ବରଂ ନିଜ ଆତ୍ମାର ଡାକରାରେ ଅନ୍ତଃର୍ନିହିତ ଶକ୍ତିର ଉତ୍ତୋରଣ କରି ସେସବୁ ଅପମାନର ପ୍ରତିଶୋଧ ନେଇଛନ୍ତି। ଶିକ୍ଷିତ ହୋଇ ଆତ୍ମନିର୍ଭରଶୀଳ ହୋଇଛନ୍ତି।

କୁନ୍ତଳା - ହଁ ହୋଇଛି।

ପ୍ରୌଢ଼ - ତା'ହେଲେ ଆଜି ସେମିତି ଭାବେ ନିଜେ ପୁଣିଥରେ ସଶକ୍ତ ଆଉ ଆତ୍ମ ନିର୍ଭରଶୀଳ ହେବାର ପ୍ରୟାସ କରୁ ନାହାଁନ୍ତି କାହିଁକି ?

କୁନ୍ତଳା - ମୁଁ ଯଥେଷ୍ଟ ଆତ୍ମନିର୍ଭରଶୀଳ ଏବଂ ସଶକ୍ତ ମଧ୍ୟ।

ପ୍ରୌଢ଼ - ହଁ ଯେହେତୁ ଉଚ୍ଚ ପଦରେ ଚାକିରି କରିଛନ୍ତି ତେଣୁ ଆର୍ଥିକଭାବେ ଆପଣ ଆତ୍ମ ନିର୍ଭରଶୀଳ ହୋଇପାରିଛନ୍ତି ସତ୍ୟ ମାତ୍ର ଶାରିରୀକ ଭାବେ ଏବେବି ଆପଣ ଅବଳା-ଦୁର୍ବଳା।

କୁନ୍ତଳା - କେବେ ନୁହେଁ।
(ହାତରେ ଛୁରି ଧରି କୁନ୍ତଳା ଆଡକୁ ଆଗେଇଲା)।

ପ୍ରୌଢ଼ - ମିଛକଥା !

କୁନ୍ତଳା - କ'ଣ କହିବାକୁ ଚାହାଁନ୍ତି ଆପଣ ?

ପ୍ରୌଢ଼ - (ଚୁପ୍ ରହିବାକୁ ଇସାରା ଦେଲେ) ସ୍...ସ୍...... ପାଟି ଖୋଲି କହିଲେ କ'ଣ ସବୁ କଥା ବୁଝିପାରିବେ ? ଆପଣ କ'ଣ ଜାଣିନାହାନ୍ତି ଯେ ଶବ୍ଦର ଭାଷାଠାରୁ ନିରବତାର ଭାଷା ଅନେକ ଶକ୍ତିଶାଳୀ । ପୁଣି ଦେହର ଭାଷା ଠାରୁ ଆଖିରଭାଷା ଆହୁରି ପ୍ରାଞ୍ଜଳ ଓ ସ୍ପଷ୍ଟ ଭାବେ ବୁଝିହୁଏ। (କ୍ରମେ ଆଗେଇଲେ)

କୁନ୍ତଳା - ମୁଁ ଚିତ୍କାର କରିବି।

ପ୍ରୌଢ଼ - ତା'ପୂର୍ବରୁ ମୁଁ ଆପଣଙ୍କର କଣ୍ଠରୋଧ କରି ସାରିଥିବି। ଚୁପ୍‌କର ! ଆଉ ପାଖରେ ଯାହାଅଛି ଦେଇଦିଅ। ପ୍ରଥମେ Phone, ଗହଣା, ତା'ପରେ ପଇସା ପତ୍ର।

କୁନ୍ତଳା - ଚାବି ସେଇ ବ୍ୟାଗରେ ଅଛି। ବ୍ୟାଗଟା ମୋତେ ଦିଅନ୍ତୁ ତା'ପରେ ଆପଣ ଯାହା ଚାହିଁବେ ଦେଇଦେବି ।

ପ୍ରୌଢ଼ - ବ୍ୟାଗଟା ତ ମୋ ପାଖରେ ଅଛି ଥାଉ।

କୁନ୍ତଳା - ତା'ହେଲେ ଏଥର ଯାଆନ୍ତୁ।

ପ୍ରୌଢ଼ - ଚାଲିଯିବି, (ହସିଲେ) ଆପଣଙ୍କ ଭଳି ଜଣେ ସୁନ୍ଦରୀ, ଅପରୂପା, ଅବଳାକୁ ଏମିତି ଅସହାୟ ଭାବରେ ଏକାକି ଛାଡିଦେଇ କେହି କ'ଣ ଏମିତି ଖାଲି ହାତରେ ଫେରି ଚାଲିଯାଇ ପାରେ। (ହସିଲେ)

କୁନ୍ତଳା - Please, for the God shake ଆପଣ ମୋତେ ଦୟାକରନ୍ତୁ । ମୁଁ ଆପଣଙ୍କ ପାଦ ଧରୁଛି।

ପ୍ରୌଢ଼ - (ହସିଲେ) Relax ଆଗ ଉଠି ଠିଆ ହୁଅନ୍ତୁ। ଏଥର କୁହନ୍ତୁ। ଆପଣ ମୋ ଉପରେ ଏବେ ପ୍ରତିଶୋଧ ନେବାକୁ ଚାହାଁନ୍ତି ନା ନାହିଁ ?

କୁନ୍ତଳା - (କାନ୍ଦିଲା)

ପ୍ରୌଢ଼ - (ଛୁରି ବଢାଇ) ନିଅନ୍ତୁ। ଧରନ୍ତୁ। ଆଉ ପ୍ରତିଶୋଧ ନେବାକୁ ପ୍ରସ୍ତୁତ ହୋଇଯାଆନ୍ତୁ।

କୁନ୍ତଳା - (ଛୁରି ଧରିଲା)

ପ୍ରୌଢ଼ - ଧରା ଯାଉ ଆପଣ ମୋତେ ଏବେ ହତ୍ୟାକରି ଦେଲେ। ଏଥର ତା'ପରର କାହାଣୀଟା ଟିକିଏ ଭାବିଦେଖିଲେ। ପୋଲିସ, ଆସିବ କୋର୍ଟ, କଚେରୀ, ତାପରେ କମ୍ପାନି ଋକିରିରୁ ବରଖାସ୍ତ କରିଦେବ। ସମସ୍ତେ କ୍ରୀମିନାଲ କହିବେ । ଯେଉଁ ସମାଜ ଆଜି ଆପଣଙ୍କୁ ନ୍ୟାୟ ଦେଇ ପାରିନି ବୋଲି କହୁଛନ୍ତି ତାପରେ କ'ଣ ସବୁ ଏ ସମାଜ ନ୍ୟାୟର ସୁନା କଳସକୁ ଆପଣଙ୍କ ଉପରେ ଉଜାଡ଼ି ଦେବୁ ଭାବୁଛନ୍ତି ? ନା ଅସମ୍ଭବ !

କୁନ୍ତଳା - ତାମାନେ ଅନ୍ୟାୟ ଆଗରେ କ'ଣ ମୁଁ ନିଜକୁ ସମର୍ପଣ କରିଦେବି ?

ପ୍ରୌଢ଼ - ସେଇଆତ ଏଇନେ କଲେ ଆପଣ। ମୁଁ ଜଣେ ପ୍ରୌଢ଼, ଶକ୍ତିହୀନ ଅଥଚ ଆପଣ ଜଣେ ଯୁବତୀ, ଯଥେଷ୍ଟ ଶକ୍ତିଶାଳୀ, ଅଥଚ ଆତ୍ମରକ୍ଷାର କିଛି ଉପାୟ ନକରି, ସଂଘର୍ଷନ କରି ନିଜକୁ ମୋ ନିକଟରେ ସମର୍ପଣ କରିଦେଲେ।

କୁନ୍ତଳା - ମୋ ବ୍ୟାଗଟା ଆପଣଙ୍କ ପାଖରେ ରହିଗଲା ପରା।

ପ୍ରୌଢ଼ - ମୁଁ ଜାଣିଥିଲି ସେଥିରେ ଲଙ୍କାମରିଚ ଆଉ ଗୋଲମରିଚର spray ଥିଲା ତେଣୁ ମୁଁ ତାକୁ ରଖି ଦେଇଥିଲି। ମୁଁ ଦେଖିବାକୁ ଋହୁଁଥିଲି ଯେ ଆପଣ ନିଜେ କେତେ ସୁରକ୍ଷିତ ?

କୁନ୍ତଳା - ମୋ ବ୍ୟାଗରେ spray ଥିଲା ବୋଲି ଜାଣିଲେ କେମିତି ?

ପ୍ରୌଢ଼ - ଆଜିକାଲିର ଯୁବତୀ ମାନଙ୍କ ବ୍ୟାଗରେ ସେସବୁ ରହିଥାଏ। ନିଜର ଆତ୍ମରକ୍ଷା ପାଇଁ।

କୁନ୍ତଳା - ମାନେ।

ପ୍ରୌଢ଼ - ବାହାରେ କାହାର ପାଦଶବ୍ଦ ଶୁଭୁଛି....

କୁନ୍ତଳା - କାହିଁ ନା'ତ.... ଆପଣ କିମିତି ଜାଣିଲେ ?

ପ୍ରୌଢ଼ - ବୋଧହୁଏ କୌଣସି ନାରୀଙ୍କର....

କୁନ୍ତଳା - ଆପଣ କ'ଣ ଜଣେ ଡିଟେକ୍ ଟିଭ...

ପ୍ରୌଢ଼ - ଜଣେ ଛନ୍ଦମୟୀ ନାରୀଙ୍କର ପାଦଶବ୍ଦ ଭଳି ଲାଗୁଛି।

କୁନ୍ତଳା - ଆପଣ କ'ଣ ସ୍ୱପ୍ନ ଦେଖୁଛନ୍ତି ନା ଚଳଚିତ୍ର...

ପ୍ରୌଢ଼ - ଆଖିରେ କଜ୍ଜ୍ୱଳ, ଓଠରେ ପାନପିକର ନାଲି, ପାଦରେ ନୂପୁରର ଛନ୍ଦ...ହାତରେ କଙ୍କଣର ମୂର୍ଚ୍ଛନା।

କୁନ୍ତଳା - ସେ କ'ଣ ଜଣେ ନର୍ତ୍ତକୀ...

ପ୍ରୌଢ଼ - ନା-ନାୟିକା... ?

କୁନ୍ତଳା - ଶକୁନ୍ତଳା ନାଟକର ନାୟିକା

ପ୍ରୌଢ଼ - ଆଉ କାହା ଜୀବନ ନାଟକର... ଆଉ ଟିକିଏ ଋ ମିଳିପାରିବ....

କୁନ୍ତଳା - ଆପଣ ହଠାତ୍ ଉତ୍ତେଜିତ ଜଣାପଡୁଛନ୍ତି ।

ପ୍ରୌଢ଼ - ଆସ୍ତେ .... କେହି କାଳେ ଶୁଣିବ ? ଶୀଘ୍ର ଋ' ଆଣନ୍ତୁ।

କୁନ୍ତଳା - ଚିନି, ନା ବିନା ଚିନି।

ପ୍ରୌଢ଼ - ଯାହାହେଲେ ବି ଚଳିବ...କ୍ଷୀର ଅଛିନା ନାହିଁ।

କୁନ୍ତଳା - ଜାଣିନି, ହୁଏତ ଥାଇପାରେ-ନହେଲେ ଗୁଣ୍ଡକ୍ଷୀର ଅଛି

ପ୍ରୌଢ଼ - ଗ୍ଲ' ହେବା ପାଇଁ ପ୍ରାୟ କେତେ ସମୟ ଲାଗିବ ?

କୁନ୍ତଳା - ଅତିକମ୍‌ରେ ୩/୪ ମିନିଟ୍ !

ପ୍ରୌଢ଼ - ନ ହେଲେ ସରବତ.... ସରବତ ହେଲେବି ଚଳିବ।

କୁନ୍ତଳା - ଘରେ କିନ୍ତୁ ଲେମ୍ବୁ ନଥିବ।

ପ୍ରୌଢ଼ - ଅଦା ପକେଇ ଦିଅନ୍ତୁ।

କୁନ୍ତଳା - ଆପଣ ପରା ଚିନି ଖାଇବେ ନାହିଁ

ପ୍ରୌଢ଼ - ଓ ହୋ ବିନାଚିନିରେ କରି ଦିଅନ୍ତୁ...

କୁନ୍ତଳା - ବିନାଚିନିରେ ସରବତ.... କିମିତି କରିବି... ?

ପ୍ରୌଢ଼ - ନହେଲେ ପାଣି ଗିଲାସେ ତ ଦେଇ ପାରିବ .... ନା ନାହିଁ।

କୁନ୍ତଳା - କିନ୍ତୁ ହଠାତ୍ ଆପଣଙ୍କର କ'ଣ ହେଲା ? ହଠାତ୍ ଆପଣ ଏତେ ଉତ୍ତେଜିତ ଆଉ ଅସ୍ଥିର ହୋଇପଡିଲେ କାହିଁକି ?

ପ୍ରୌଢ଼ - ଆଗେ ପାଣି ଦିଅନ୍ତୁ। ତା'ପରେ କଥା.... ଯାଆନ୍ତୁ Please (କୁନ୍ତଳା ଭିତରକୁ ଗଲା ପ୍ରୌଢ଼ ଅନ୍ତର୍ଧାନ ହୋଇଗଲେ। ଘର ଭିତରକୁ ପଶି ଆସିଲେ ଜଣେ ସୁସଜ୍ଜିତା ରମଣୀ- ଇତସ୍ତତଃ ଦେଖୁଥିଲେ। ଯେମିତି କାହାକୁ ଖୋଜୁଥିଲେ।)

କୁନ୍ତଳା - (ପାଣିନେଇ) ନିଅନ୍ତୁ ପାଣି।

ନାରୀ - (କବିତା ଆବୃତ୍ତି କରି ପ୍ରବେଶ) ମଙ୍ଗଳେ ଅଇଲା ଉଷା ବିକଚ ରାଜିବ ଦୃଶା ଜାନକୀ ଦର୍ଶନ ତୃଷା ହୃଦୟେ ବହି।

କୁନ୍ତଳା - ସରବତ...

ନାରୀ - କର ପଲ୍ଲବେନିହାର, ମୁକ୍ତାଧରି ଉପହାର ସତୀଙ୍କ ବାସବାହାର ପ୍ରାଙ୍ଗଣେ ରହି, କଳ କଣ୍ଠୁ କଣ୍ଠେ କହିଲା...

କୁନ୍ତଳା - ପାଣି....

ନାରୀ - ଦରଶନ ଦିଅ ସତୀ ରାତି ପାହିଲା। କାହାଲାଗି ?

କୁନ୍ତଳା - ଜଣେ ପ୍ରୌଢ଼ ବ୍ୟକ୍ତି-ନାଁ ଜାଣିନି

ନାରୀ - ପ୍ରେମିକ ? ତୁମର ?

କୁନ୍ତଳା - ସେ ଜଣେ ବୟସ୍କ ବ୍ୟକ୍ତି....ପିତୃତୁଲ୍ୟ....

ନାରୀ - (ହସି) ପିତୃତୁଲ୍ୟ କିନ୍ତୁ ପିତା ନୁହେଁ। ତୁମେ କାବ୍ୟ କବିତା ପଢ଼ିଛ ?

କୁନ୍ତଳା - କିଛି କିଛି

ନାରୀ - "ଉଷା" କାବ୍ୟ-କିମ୍ବା.....ଦୃଶ୍ୟକାବ୍ୟ 'ରାଜା ଇଡିପସ୍'।

କୁନ୍ତଳା - ନା....କିନ୍ତୁ କାହିଁକି ?

ନାରୀ - ଗୋଟିକରେ ପିତା ଆଉ କନ୍ୟାର ପ୍ରଣୟ ଆଉ ଅନ୍ୟଟିରେ ପୁତ୍ର ଆଉ ମାତାର

କୁନ୍ତଳା - ଧିକ୍ ସେ ସମ୍ପର୍କ ସବୁ....କାବ୍ୟର ସମ୍ପର୍କ ସବୁ କେବେବି ବାସ୍ତବ ସମ୍ପର୍କ ହୋଇନପାରେ।

ନାରୀ - ବେଳେ ବେଳେ କାବ୍ୟସତ୍ୟ ଜୀବନ ସତ୍ୟ ହୋଇଉଠେ। ଯେତେବେଳେ ନାୟକ ଜଣକ ବାକ ଚାତୁରୀରେ ପାରଙ୍ଗମ ଆଉ ନିପୁଣ ହୋଇଉଠନ୍ତି। ସ୍ୱପ୍ନର ଚେହେରା, ମନ ମୋହକ ରୂପ। ଆକର୍ଷଣ କଳାଭଳି କଥାରେ ବିଚରା-ଆମଭଳି ନାରୀମାନଙ୍କୁ ମନ୍ତ୍ରମୁଗ୍ଧ କରିପାରନ୍ତି ଆଉ ଆମେ ପଦ୍ମବନର ମହୁମାଛି ଭଳି

ସେଇ ମାଦକତାର ଗନ୍ଧରେ ଆକର୍ଷିତ ହୋଇ ବନ୍ଦି ହୋଇଯାଉ-ଆପଣା ଅସ୍ତିତ୍ୱ ହରେଇ ସମର୍ପିତ ହୋଇ ଯାଉ। ଯାହାକୁ ପ୍ରେମର ଆଖ୍ୟା ଦେଇ ଉତ୍ସାହିତ ହୋଇ ପଡୁ। ପୁଣି ସବୁକିଛି ହରେଇ ସାରିଲା ପରେ ସେତେବେଳେ ସତ୍ୟକୁ ଆଖି ଆଗରେ ଖିଲିଖିଲି ହୋଇ ହସିଉଠିବାର ଦେଖୁ ଆମ ସ୍ୱପ୍ନ ଭାଙ୍ଗିଯାଏ ମୋହ ତୁଟିଯାଏ । ଆଉ ନିଛକ ବାସ୍ତବତାକୁ ଆଖିସାମ୍ନାରେ ଦେଖି ଚିତ୍କାର କରିଉଠୁ...

କୁନ୍ତଳା - ମୁଁ ପ୍ରତାରିତା ହୋଇଛି...

ନାରୀ - ଏ ସଂସାରର ସେଇ ଭଳି ମାୟାର ଜାଲରେ ସମସ୍ତେ ପ୍ରତାରିତ । କିଏ କମ୍ କିଏ ବେଶୀ।

କୁନ୍ତଳା - ଆପଣ କିଏ ? ଆପଣ ଏଠିକି କିମିତି ଆସିଲେ ?

ନାରୀ - ମୋ ଆଗରୁ ଆସିଥିବା ବ୍ୟକ୍ତିଙ୍କୁ ଅନୁସରଣ କରି, ଚାଲିଆସିଲି।

କୁନ୍ତଳା - ସିଏ କିଏ... ?

ନାରୀ - ତୁମେ ଜାଣିଥିବ.... ?

କୁନ୍ତଳା - ନା ! ମୁଁ ତାଙ୍କ ବିଷୟରେ ସେମିତି କିଛି ଜାଣନି ?

ନାରୀ - ସେ ଜଣେ ପ୍ରତାରକ ? କଥା ଦେଇ କଥା ରଖନ୍ତିନି। ଠିକ୍ କବିମାନଙ୍କ ଭଳି।

କୁନ୍ତଳା - ଏକଥା କିନ୍ତୁ ମୁଁ ବିଶ୍ୱାସ କରିପାରୁନି।

ନାରୀ - ସେ ଜଣେ ଲମ୍ପଟ-ଭ୍ରମର ଭଳି...ମଧୁ ଶୋଷିନେଇ ଫୁଲର ପାଖୁଡାକୁ ପାଦରେ ଠେଲି ଦେଇ ଉଡିଯାଆନ୍ତି....

କୁନ୍ତଳା - ଏ କଥାକୁ ମୁଁ ଚିନ୍ତାବି କରି ପାରୁନି- ସେ ବୋଧହୁଏ ଇଏ ନୁହଁନ୍ତି।

ନାରୀ - ଅଥଚ ଟେବୁଲ ଉପରେ ସେଇ ନାଲି ଗୋଲାପର କଳିଟିଏ ସାଇତା ହୋଇ ରହିଛି।

କୁନ୍ତଳା - ଗୋଲାପ ଫୁଲ ? ଏଠି କିଏ ରଖିଲା....କେତେ ବେଳେ ରଖିଲା ମୁଁ ତ ଜାଣିନି କି ମୁଁ ତ ଆଣିନି....।

ନାରୀ - ମୁଁ ବି ତ ଆଣିନି-ତାହେଲେ କେଉଁ ସ୍ୱର୍ଗ ଦୂତ ନହେଲେ ସେଇ ପାଗଳ ପ୍ରେମିକ ଆଣିଥିବେ ନିଶ୍ଚେ। ତୁମ ପାଇଁ।

କୁନ୍ତଳା - ନା- ଆପଣ ଭୁଲ କରୁଛନ୍ତି।

ନାରୀ - ଆଉ କ୍ଷଣିକ ପରେ ତୁମର ଗଭାରେ ସେଇ ଗୋଲାପକଢିକୁ ଖୋସି ଦେଇ ତୁମକୁ ମତୁଆଲା କରିଥାନ୍ତେ.....

କୁନ୍ତଳା - ନା ସେ ସେମିତି ନୁହଁନ୍ତି-

ନାରୀ - ବାଃ- ଏଇ ମାତ୍ର କେତେ ମୁହୂର୍ତ୍ତର ପରିଚୟରେ ତୁମେ ତ ତାଙ୍କ ପ୍ରତି ବେଶ ପ୍ରଗଳ୍ଭ ହୋଇ ପଡିଛ ଆଉ କିଛି କ୍ଷଣର କଥୋପ କଥନରେ ତୁମେ ତ ଆପେ ଧରା ଦେଇଥାନ୍ତ ନିଶ୍ଚୟ।

କୁନ୍ତଳା - ଓଃ ଆପଣ ନିଶ୍ଚୟ ଜଣେ ସନ୍ଦେହୀ ନାରୀ...

ନାରୀ - କାରଣ ମୁଁ ପ୍ରତାରିତା....ଥରେ ପ୍ରତାରଣାର ଶୀକାର ହେଲେ ସାରା ସଂସାରଟାର ରୂପ ମରିଚିକା ଭଳି ଲାଗେ....ସତ୍ୟ ଆଉ ମିଥ୍ୟା ଭିତରେ ଦୂରତ୍ୱ କମି କମିଯାଏ। ପ୍ରେମ ଆଉ ପ୍ରତାରଣା ଭିତରେ ଦେହର ଉତ୍ତେଜନାକୁ ହିଁ ଆହୁତି ଦିଆହୁଏ।

କୁନ୍ତଳା - ସିଏ କ'ଣ ଆପଣଙ୍କ ସ୍ୱାମୀ....

ନାରୀ - କିଏ କାହାର ସ୍ୱାମୀ-କିଏ କାହାର ସ୍ତ୍ରୀ-କହିବା ମୁସ୍କିଲ୍..ସିଏ ସାମାଜିକ ସମ୍ପର୍କ ହେଉବା ସଂସାରର ନିୟମ... ଆଉ ସବୁ ସମ୍ପର୍କର ପରିଣତି ମଧ୍ୟ .....।

କୁନ୍ତଳା - ସବୁ ସମ୍ପର୍କର...

ନାରୀ - କବି ଓ କବିତାର ସମ୍ପର୍କ ହେଉ ବା କବିତା ଓ ଶବ୍ଦର ସମ୍ପର୍କ ହେଉ ଏମାନେ ବଦଳି ଯାଆନ୍ତି ପ୍ରତି ଲେଖାରେ, ପ୍ରତି କଥାରେ, ପ୍ରତିଟି କାବ୍ୟ କବିତାର ଭାବରେ, ସଂଳାପରେ....ସବୁ ସତ୍ୟ ଯାହା ଆମକୁ ଚିନ୍ମୟ, ଅକ୍ଷୟ, ଅବିନଶ୍ୱର ଭଳି ଲାଗେ ସଂସାରର ଘାତ ପ୍ରତିଘାତରେ ସେସବୁ ତା'ର ଅସ୍ତିତ୍ୱ ହରେଇ ଦିଏ ଆମ ଆଖିରେ, ଆମ ବ୍ୟବହାର ଆଉ ଚଳଣିରେ।

କୁନ୍ତଳା - ଆପଣଙ୍କ କଥା ମୁଁ ଠିକ୍ ଠିକ ବୁଝି ପାରୁଛି। କିନ୍ତୁ ବିଶ୍ୱାସ କରିପାରୁନି।

ନାରୀ - ଏଇ ଗୋଲାପ ଫୁଲକୁ ବିଶ୍ୱାସ କରିପାରୁଛ, ବିଶ୍ୱାସ କରିପାରୁଛ ମୋର ଅବସ୍ଥିତିକୁ। ଅଥଚ ତାଙ୍କର ବ୍ୟବହାରକୁ ତୁମେ ବିଶ୍ୱାସ କରିପାରୁନ। ଏହା ହିଁ ବିଡମ୍ବନା ପ୍ରେମର...

କୁନ୍ତଳା - ମାନେ.....

ନାରୀ - ତୁମେ ପ୍ରେମ କରିବା ଆରମ୍ଭ କରିଛ ?

କୁନ୍ତଳା - ମିଛକଥା। ମୋଟେ ନୁହେଁ।

ନାରୀ - ତୁମେ... ବାରିପାରୁଛ କେଉଁ ଏକ ଫୁଲର ବାସ୍ନା...

କୁନ୍ତଳା - (ଶୁଙ୍ଘି) ହଁ.... ଗୋଲାପ ଫୁଲର ବାସ୍ନା।

ନାରୀ - ନା ଆଉ ଟିକିଏ ଏକାଗ୍ରତାର ସହ ଆଖିବଂଦ କରି ଆଘ୍ରାଣ କରିଦେଖ ଜାଣିପାରିବ।

କୁନ୍ତଳା - ବୋଧହୁଏ ରଜନୀଗନ୍ଧା.....

ନାରୀ - ତୁମେ କ'ଣ ଖୋସିଛ ଗଭାରେ ?

କୁନ୍ତଳା - ନା..

ନାରୀ - ପାଉଡର, ସ୍ନୋ, ଆଦିର ପ୍ରସାଧନ ଯାହା ରଜନୀଗନ୍ଧାର ଗନ୍ଧ ବୁଣିଦେଇଛି। ଏଇ ସାରା କୋଠରୀରେ।

କୁନ୍ତଳା - ନା-ତ-ମୁଁ ପ୍ରାୟ ପ୍ରସାଧନ ବ୍ୟବହାର କରେନା..

ନାରୀ - ତଥାପି ଗଜରାମାଳର ମହମହସୁବାସ। ଠିକ୍ ଉପଯୁକ୍ତ ଶବ୍ଦ ସବୁକୁ ଚୟନ କରି କବିତାରେ ଗୁନ୍ଥାହେଲା ଭଳି ସଜାଇ ଦିଆଯାଏ। ଅଥଚ ଦେଖେଇ ହୁଏନା। କହିହୁଏନା, ବୁଝେଇ ହୁଏନା ତା'ର ଅଭିବ୍ୟକ୍ତି, କି ଭୁଲିବି ହୁଏନା ତାର ସ୍ପର୍ଶର ଅନୁଭୂତି । କେବଳ ସେସବୁକୁ ଝୁରିଝୁରି ମରିଯାଇହୁଏ। ପ୍ରେମ କରି ହୁଏ । ପ୍ରତାରିତ ହୋଇ ମଧ୍ୟ ପ୍ରତ୍ୟାଖ୍ୟାନ କରିହୁଏନା.... ଧନ୍ୟ ତୁମେ କବି, ଧନ୍ୟ ତୁମର ସ୍ପର୍ଶ ଆଉ ଧନ୍ୟ ତୁମେ। ତୁମର ପ୍ରେମ ସଫଳ ହେଉ (ଗୋଲାପଟି ନେଇ କୁନ୍ତଳା ମୁଣ୍ଡରେ ଲଗେଇଲେ) ଅଥଚ ମୁଁ ଏମିତି ପ୍ରତାରିତ ହୁଏ...ପ୍ରତି ଥର ପ୍ରତି ମୁହୂର୍ତ୍ତରେ (କାନ୍ଦି, କାନ୍ଦି ପ୍ରସ୍ଥାନ)

(ନାରୀର ଯିବା ବାଟକୁ ଚାହିଁଛି କୁନ୍ତଳା-ପ୍ରବେଶ କଲେ ପ୍ରୌଢ଼- କୁନ୍ତଳାର କବରୀରୁ ଗୋଲାପଫୁଲ ବାହାର କଲାବେଳକୁ କୁନ୍ତଳା ରାଗି ଉଠିଲା।)

କୁନ୍ତଳା - କିଏ ?

ପ୍ରୌଢ଼ - ମୁଁ....

କୁନ୍ତଳା - ଆପଣ କ'ଣ କରୁଥିଲେ ? ଅଭଦ୍ରାମି କରୁଥିଲେ ନିଶ୍ଚୟ ?

ପ୍ରୌଢ଼ - ମୋ ଗୋଲାପ ମୋତେ ନ କହି ଆପଣ କେଉଁ ସ୍ପର୍ଦ୍ଧାରେ ନିଜ କବରୀରେ ଖୋସିଛନ୍ତି ? ସେଇଟା କ'ଣ ଅଭଦ୍ରାମି ନୁହେଁ।

କୁନ୍ତଳା - ମୁଁ ନିଜ ଇଚ୍ଛାରେ ଖୋସିନି-ସିଏ ଖୋସିଦେଲେ... ଏଇ ନିଅନ୍ତୁ ଆପଣଙ୍କର ପାଣି।

ପ୍ରୌଢ଼ - ଆବଶ୍ୟକ ନାହିଁ। କଥା ବାଆଁରେଇବାର ଏଇଟା ଗୋଟିଏ ପୁରୁଣା ଉପାୟ।

କୁନ୍ତଳା - କେମିତି ?

ପ୍ରୌଢ଼ - ଏଠି ତ କେହିନାହାଁନ୍ତି। ଆପଣଙ୍କ ମୁଣ୍ଡରେ ଫୁଲ ଖୋସିଲା କିଏ ?

କୁନ୍ତଳା - ଆପଣ କୁଆଡେ ଯାଇଥିଲେ ?

ପ୍ରୌଢ଼ - ଗାଧୁଆ ଘରକୁ...

କୁନ୍ତଳା - ସିଏ ଆସିଥିଲେ।

ପ୍ରୌଢ଼ - କିଏ... ଆପଣଙ୍କ ପ୍ରେମିକ ?

କୁନ୍ତଳା - ନା ଆପଣଙ୍କ ସ୍ତ୍ରୀ....

ପ୍ରୌଢ଼ - କିଏ କାହାର ସ୍ତ୍ରୀ, କିଏ କାହାର ସ୍ୱାମୀ ? କବି ସହ କାବ୍ୟର ସମ୍ପର୍କ, କବିତାର ସମ୍ପର୍କକୁ କେବେ ତଉଳି ଦେଖିଛନ୍ତି। ଶବ୍ଦସବୁ ବହୁରୂପି ଏବଂ କଥାକାର ମଧ୍ୟ ଅନେକ ପ୍ରକାରର....।

କୁନ୍ତଳା - ବୁଝି ପାରିଲିନି....

ପ୍ରୌଢ଼ - ଶୁଣିଛନ୍ତି ଗୀତଟିଏ। 'କିନ୍ତୁ ଏକ ଶବ୍ଦ ପୁଣି ଅର୍ଥତା ଅନେକ କିନ୍ତୁ ଏକ ବହୁ ପଥ ବାହାରିଥିବା ଛକ' ସେମିତି-କବିତାର ଶବ୍ଦ ସବୁ ସେ ଯାହା କହେ ପ୍ରକୃତରେ ସେ ତାହା ନୁହେଁ। ସେ ଯାହା କହିବାର ପ୍ରୟାସ କରେ.... ପ୍ରକୃତରେ ସେ ତାହା କେବେବି କହିବାକୁ ଚାହେନା। ସେଇଟା ତା'ର ଛଳନା।

କୁନ୍ତଳା - ଓହୋ...ଆପଣ ଦି'ଜଣ ମୋତେ ପାଗଳ କରିଦେବେ। ମୁଁ ବୁଝିପାରୁନି କିଏ ଠିକ୍ ଆଉ କିଏ ଭୁଲ... ?

ପ୍ରୌଢ଼ - ସେ କହିଥିବ ନିଶ୍ଚେ ଯେ ଏ ଗୋଲାପ ମୁଁ ଆପଣଙ୍କ ପାଇଁ ଆଣିଥିଲି-ମୁଁ ଆପଣଙ୍କୁ ପ୍ରେମ କରିବାକୁ ଚାହେଁ ଇତ୍ୟାଦି ଇତ୍ୟାଦି।

କୁନ୍ତଳା - ହଁ ପ୍ରାୟ ସେମିତି ସବୁଥିଲା ତାଙ୍କର ବକ୍ତବ୍ୟ।

ପ୍ରୌଢ଼ - ସେଇଥିପାଇଁ ସେ ଆପଣଙ୍କ ଗଭାରେ ଗୋଲାପ କଢ଼ି ଖୋସିଦେଇ ଚାଲିଗଲେ।

କୁନ୍ତଳା - ହଁ.... ପ୍ରାୟ ସେଇଆ...

ପ୍ରୌଢ଼ - ଆଉ କାନ୍ଦି କାନ୍ଦି ସେ ବିଦାୟ ନେଇଥିବେ ନିଶ୍ଚୟ....

କୁନ୍ତଳା - ହଁ....

ପ୍ରୌଢ଼ - ଆପଣ କାହିଁକି ମୋତେ ଡ଼ାକିଲେ ନାହିଁ ? ଆପଣ କ'ଣ ଭାବିନେଲେ ଯେ ସତରେ ମୁଁ ଆପଣଙ୍କୁ ପ୍ରେମ କରୁଛି ?

କୁନ୍ତଳା - (ଥଥମମ) ନା-ସେମିତି ନୁହେଁ...

ପ୍ରୌଢ଼ - ତା'ହେଲେ କ'ଣ ଆପଣ ମୋତେ ଭଲ ପାଇ ବସିଛନ୍ତି ?

କୁନ୍ତଳା - ନା-ତ' ମିଛ- ଏକଥା କିଏ କହିଲା ?

ପ୍ରୌଢ଼ - ତା'ହେଲେ ଆପଣ ସେ ଗୋଲାପକୁ ଗ୍ରହଣ କଲେ କାହିଁକି ?

କୁନ୍ତଳା - ଜାଣିନି।

ପ୍ରୌଢ଼ - ତାଙ୍କୁ ବହୁତ ବାଧିଥିବ ନିଶ୍ଚୟ। ସିଏ କିଏ ଜାଣିଛନ୍ତି ?

କୁନ୍ତଳା - ଆପଣଙ୍କ....ସ୍ତ୍ରୀ....

ପ୍ରୌଢ଼ - ପ୍ରେମିକା ମଧ୍ୟ... କବିତାର ଶବ୍ଦ ଭଳି ତାଙ୍କର ପ୍ରେମ... ଏଇ ଧରାଦେବି ଧରାଦେବି ବୋଲି ମୋ ଚାରିପାଖେ ଘୂରିବୁଲନ୍ତି। ବେଳେବେଳେ ଛୁଇଁ ଦେଇ ମୋ ଦେହ ଆଉ ମନକୁ ଉତ୍ତେଜିତ କରନ୍ତି କିନ୍ତୁ ମୁଁ ତାଙ୍କୁ

ଧରିବାକୁ ଲେଖନି ବାହାର କଲାବେଳକୁ ହଜିଯାନ୍ତି କେଉଁ ବିସ୍ମୃତିର ଅତଳ ଢେଉରେ। ଖୋଜୁଖୋଜୁ ରାତି ପାହିଯାଏ। ଏମିତି ଆମର ପ୍ରେମ- ରାତି ରାତି ଉଜାଗର ହୋଇ ଖୋଲାଆଖିରେ ଆଖିଏ ସ୍ୱପ୍ନ ଧରି ପ୍ରତୀକ୍ଷାର ଜାଗର ଜାଳିବାକୁ ପଡେ। ସେ କଥା ଆପଣ ବା କେମିତି ବୁଝିବେ ? ମୋ ଗୋଲାପଟା ଦିଅନ୍ତୁ ମୁଁ ଯାଏ....।

କୁନ୍ତଳା - ଗୋଲାପଟା କ'ଣ ଆପଣ ତାଙ୍କ ପାଇଁ ଆଣିଥିଲେ ?

ପ୍ରୌଢ଼ - ହଁ।

କୁନ୍ତଳା - ଏଇଟା ଯଦିମୁଁ ନ ଫେରାଏ ?

ପ୍ରୌଢ଼ - ସେ ମୋତେ ଅବିଶ୍ୱାସ କରିବେ।

କୁନ୍ତଳା - ତାଙ୍କୁ ଆଉ ଗୋଟିଏ ଗୋଲାପ ଆଣି ଦେଇଦେବେ।

ପ୍ରୌଢ଼ - ଶବ୍ଦର ପ୍ରତିଶବ୍ଦ, ରୂପର ପ୍ରତିରୂପ କ'ଣ ସବୁ ସମସ୍ୟାର ସମାଧାନ କରିବାକୁ ସକ୍ଷମ। କବିତା ଯଦି ତାକୁ ପ୍ରତ୍ୟାଖ୍ୟାନ କରିବ। ତା'ହେଲେ କବିର ବା ଆଉ ଉପାୟ କ'ଣ ?

କୁନ୍ତଳା - ତା'ହେଲେ ଆପଣ କ'ଣ କରିବେ ?

ପ୍ରୌଢ଼ - ସ୍ୱପ୍ନ ଆଉ ବାସ୍ତବ, ପ୍ରେମିକା ଆଉ ସ୍ତ୍ରୀ, ଦୁଇଟି କଠୋର ସତ୍ୟ ଭିତରେ, ଦାନ୍ତଭିତରର ରସନାଭଳି ମୋତେ ସଂଜତ ହୋଇ ବଂଚିବାକୁ ହେବ। ମୁଁ ଆସୁଛି।

କୁନ୍ତଳା - ପୁଣି କେବେ ଆସିବେ ? ଆପଣ କହିଲେ ନାହିଁ ତ। କାହିଁକି ଆସିଥିଲେ ?

ପ୍ରୌଢ଼ - କହିବାର ଆବଶ୍ୟକତା ବା ଆଉ କ'ଣ ଅଛି। ଏଠି ମୋ କାମ ତ ସରିଛି।

କୁନ୍ତଳା - ଆପଣ କ'ଣ ଏଇ ଚ୍ହ' ପିଇବାକୁ ଆସିଥିଲେ ?

ପ୍ରୌଢ଼ - ଆପଣ କ'ଣ ସେଇଆ ଭାବୁଛନ୍ତି ?

କୁନ୍ତଳା - ନା ଠିକ୍ ସେଇଆ ନୁହେଁ। ଛାଡ଼ନ୍ତୁ ସେ କଥା। ଆପଣ ବରଂ ଏଇ ଗୋଲାପଫୁଲଟା ନେଇ ଯାଆନ୍ତୁ।

ପ୍ରୌଢ଼ - ନା ଥାଉ ! ଯେତେବେଳେ ଆପଣ ସେଇଟା ଗଭାରେ ଖୋସିନେଇଛନ୍ତି.....

କୁନ୍ତଳା - ତା'ହେଲେ ମୁଁ ଭାବିନେବି ଯେ, ଏଇଟା ଆପଣ ମୋ ପାଇଁ ଆଣିଥିଲେ।

ପ୍ରୌଢ଼ - (ହସି) ନା ଠିକ୍ ସେଇଆ ନୁହେଁ। ଆପଣ ଯେହେତୁ ପିନ୍ଧି ନେଇଛନ୍ତି, ତେଣୁ ଥାଉ।

କୁନ୍ତଳା - କିନ୍ତୁ ସିଏ କହିଲେ ଯେ, ଏଇଟା ଆପଣ ମୋ ପାଇଁ ଆଣିଛନ୍ତି ବୋଲି।

ପ୍ରୌଢ଼ - ସିଏ କହିଲେ ବୋଲି ଆପଣ ବିଶ୍ୱାସ କରିନେଲେ ନା ଏ ବିଶ୍ୱାସ ଆପଣଙ୍କ ନିଜସ୍ୱ ?

କୁନ୍ତଳା - ବିଶ୍ୱାସ ନ କରି ଉପାୟ କ'ଣ ?

ପ୍ରୌଢ଼ - (ହସି) ଖୁବ୍ ଅଭିମାନୀ ।

କୁନ୍ତଳା - କିଏ ? ଆପଣଙ୍କ ଦ୍ୱିତୀୟ ସ୍ତ୍ରୀ ?

ପ୍ରୌଢ଼ - ପ୍ରେମିକାଠୁ ବଳି ଅଭିମାନୀ । କବିତାଠୁ ବଳି ସ୍ୱାଭିମାନୀ। ଆପଣଙ୍କ ପାଖରେ ମୁଁ କିଛି ସମୟ ଅଟକିଗଲି ବୋଲି ତା'ର ଏ ଅଭିମାନ। ଛାଡ଼ ସେଇଟାକୁ ଆପଣ ଗ୍ରହଣ କରି ନେଇଛନ୍ତି ଯେତେବେଳେ ମୁଁ ଗୋଟିଏ ଛୋଟ ପ୍ରଶ୍ନ ପଚାରି ପାରିବି କି ?

କୁନ୍ତଳା - ପଚାରନ୍ତୁ।

ପ୍ରୌଢ଼ - ଏହାକୁ କାହାର ଉପହାର ଭାବି ଗ୍ରହଣ କରିଛନ୍ତି କହିଲେ ମୋର ନା ତାଙ୍କର ?

କୁନ୍ତଳା - ମୁଁ ବୁଝି ପାରିଲିନି।

ପ୍ରୌଢ଼ - ମୋ ଫୁଲ, ମୋ କବିତା, ମୋ ପ୍ରେମର ସନ୍ତକ।

କୁନ୍ତଳା - ତାଙ୍କ ଉପହାର ସବୁ ?

ପ୍ରୌଢ଼ - ଅଭିମାନ, ସ୍ୱାଭିମାନ ଆଉ ଛଳନାର ପ୍ରତୀକ ହୋଇଥାଇପାରେ।

କୁନ୍ତଳା - (ହସି) କ'ଣ କହିବି, କ'ଣ ବା ଉତ୍ତର ଦେବି, କିଛି ବୁଝିପାରୁନି।

ପ୍ରୌଢ଼ - ତା'ହେଲେ ଥାଉ। କିଛି କହିବାର ଆଉ ପ୍ରୟୋଜନ ନାହିଁ। ଆପଣ କିଛି ନକହିଲେ ବି ଆପଣଙ୍କ ମନର କଥା ମୁଁ ଠିକ୍ ବୁଝିନେଇ ପାରୁଛି। ଆପଣ ଏବେ କିଂକର୍ତ୍ତବ୍ୟବିମୂଢ଼।

କୁନ୍ତଳା - ହଁ ପ୍ରାୟ ସେମିତି।

ପ୍ରୌଢ଼ - କାରଣ ଆପଣ ଜଣେ ସୃଜନଶୀଳ ବ୍ୟକ୍ତିତ୍ୱ।

କୁନ୍ତଳା - ମାନେ ।

ପ୍ରୌଢ଼ - ଆପଣ ପ୍ରେମଶିଳା ।

କୁନ୍ତଳା - ନା ପ୍ରେମପରିତ୍ୟକ୍ତା ।

ପ୍ରୌଢ଼ - ଆତ୍ମହତ୍ୟା କୌଣସି ସମସ୍ୟାର ସମାଧାନ ନୁହେଁ। ବରଂ ପ୍ରେମ ହି ସବୁ ସମସ୍ୟାର ସମାଧାନ ଆଣିପାରେ।

କୁନ୍ତଳା - ଆପଣ କ'ଣ ପୁଣି ମୋତେ ଆଶାର ସ୍ୱପ୍ନ ଦେଖେଇବାକୁ ଚାହାନ୍ତି ?

ପ୍ରୌଢ଼ - ପ୍ରକୃତରେ ମୋ ଆଗମନର ଉଦ୍ଦେଶ୍ୟ ଆପଣଙ୍କୁ ପ୍ରେମକରିବା ନୁହେଁ ବରଂ ଆପଣଙ୍କ ମନରୁ ଜୀବନ ବିତୃଷ୍ଣାକୁ ତ୍ୟାଗକରି କେବଳ ବଞ୍ଚିବାର ଭାବକୁ ଉଦ୍ରେକ କରାଇବା। ଆତ୍ମହତ୍ୟାର ବାଟରୁ ଜୀବନ ଜୀଇଁବାର ବାଟକୁ ଫେରାଇ ଆଣିବା। ନିରାଶାରୁ ଆଶାର ସଞ୍ଚାର କରିବା। .

କୁନ୍ତଳା - କ'ଣ କହିବାକୁ ଚାହୁଁଛନ୍ତି ଆପଣ ? ପ୍ରତିରକ୍ଷାର ସାମଗ୍ରୀତ ପାଖରେ ରଖିଥିଲି । ଆଉ ବା ଅଧିକ କ'ଣ କରିପାରିଥାଆନ୍ତି ?

ପ୍ରୌଢ଼ - ଆପଣଙ୍କ ପ୍ରତିରକ୍ଷାର ସବୁ ଉପାୟତ ଆପଣଙ୍କ ଏଇ ବ୍ୟାଗ ଭିତରେ ବନ୍ଦୀ। ସେମାନେ ଏଇଥିରୁ ମୁକ୍ତ ହୋଇ ଆପଣଙ୍କୁ ସାହାଯ୍ୟ କରିବା ପୂର୍ବରୁ ଆପଣଙ୍କୁ ଏ ଦୁନିଆରୁ ମୁକ୍ତି ମିଳିସାରିଥିବ ନିଶ୍ଚୟ।

କୁନ୍ତଳା - ହୁଏତ ବା ଠିକ୍ କଥା । ତେବେ ତା'ଠାରୁ ଅଧିକ କିଛି କରିବା ମୋ ପକ୍ଷରେ ସମ୍ଭବ ନଥିଲା।

ପ୍ରୌଢ଼ - ଥିଲା। ଆପଣ Self defence ର କିଛି ବି course କରିପାରିଥାନ୍ତେ। N.C.C.Training, Martial art, କରାଟେ, ଇତ୍ୟାଦି ଇତ୍ୟାଦି। ଆପଣ କ'ଣ ଜାଣିନାହାଁନ୍ତି ଯେ ପ୍ରତିପକ୍ଷକୁ ପରାସ୍ତ କରିବାପାଇଁ ବୁଦ୍ଧି, ଆଉ ସାହସ ସହିତ ଶକ୍ତି ର ମଧ୍ୟ ଯଥେଷ୍ଟ ଆବଶ୍ୟକତା ଅଛି।

କୁନ୍ତଳା - କିନ୍ତୁ ମୋର ଏ ଯୁଦ୍ଧ ଏକ ଭିନ୍ନ ପ୍ରକୃତିର । ଏ ଯୁଦ୍ଧରେ ଶତ୍ରୁ ଯେ ମୋର ଅତିପ୍ରୀୟ, ଅତିଆପଣାର। ତାକୁ ଜିଣିବାକୁ ଶକ୍ତି ଆଉ ବୁଦ୍ଧିର ଆବଶ୍ୟକତା ବା କ'ଣ ?

ପ୍ରୌଢ଼ - ଏତେବେଳେ ଯାଇ ଆପଣ ଠିକ୍ କଥାଟିଏ କହିଲେ। ପ୍ରେମର ଯୁଦ୍ଧ ହେଉବା ସମ୍ପର୍କର ଯୁଦ୍ଧ। ଏ ଯୁଦ୍ଧରେ ଜୟ ପରାଜୟର ଇତିହାସ ତ କାହାର ଅଜଣାନୁହେଁ 'ନୂଆନୁହେଁ' । ସମ୍ପର୍କ ଯୁଦ୍ଧର ସବୁ ନିୟମ କିନ୍ତୁ ଖୁବ୍ ବିଚିତ୍ର, ଫଳାଫଳ ମଧ୍ୟ ତା'ଠୁ ଆଶ୍ଚର୍ଯ୍ୟ ପ୍ରକାରର। ଏ ଯୁଦ୍ଧରେ କେତେବେଳେ ଜିତି ସାରି ହାରିଯିବାର ଦୁଃଖରେ ପଶ୍ଚାତାପ କରିବାକୁ ପଡେ ତ କେତେବେଳେ ହାରିଯାଇ ଜିତିବାର ଆତ୍ମସନ୍ତୋଷ ଆସେ। କ'ଣ ସତ କହିଲି ନା ? ଅସଲ କଥା ହେଲା ସମ୍ପର୍କର ଏ ଯୁଦ୍ଧରେ କେହି କେବେ ହାରେନା କି କେହି

କେବେ ଜିତେନା, ଏଠି ହାରିବା ଜିତିବାର କିଛି ମାନେନାହିଁ। କେବଳ ସମ୍ପର୍କ ସବୁକୁ ବଞ୍ଚାଇ ରଖିବା, ସାଇତି ରଖିବା ଆମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ।

କୁନ୍ତଳା - (କାନ୍ଦି) ମୋତେ ଆପଣ ଅଧିକ ଦ୍ୱିଧାଗ୍ରସ୍ତ କରିଦେଉଛନ୍ତି। ମୁଁ ବୁଝି ପାରୁନି ଯେ ମୁଁ କ'ଣ କରିବି ମୋ ପ୍ରତି ଯେ ଅନ୍ୟାୟ କଲା, ମୁଁ ତା'ର ପ୍ରତିଶୋଧନନେଇ କ'ଣ ତାକୁ କ୍ଷମା କରିଦେବି ?

ପ୍ରୌଢ଼ - କ'ଣ ଏମିତି ଆତ୍ମହତ୍ୟା କରି ତା'ର ପ୍ରତିଶୋଧନେବେ ?

କୁନ୍ତଳା - କାରଣ ତାଙ୍କୁ ତ ମୁଁ ହତ୍ୟା କରିପାରିବି ନାହିଁ।

ପ୍ରୌଢ଼ - ତାକୁ ହତ୍ୟା କରିବାର ଆବଶ୍ୟକତା ମଧ ନାହିଁ।

କୁନ୍ତଳା - ତା'ହେଲେ କ'ଣ କରିବି ?

ପ୍ରୌଢ଼ - ଆଇନର ଆଶ୍ରୟ ନିଅନ୍ତୁ, ପୋଲିସର ସାହାଯ୍ୟନିଅନ୍ତୁ। social media ରେ ନିଜର ସ୍ୱରଉତ୍ତୋଳନ କରନ୍ତୁ।

କୁନ୍ତଳା - ସେ ଅତ୍ୟନ୍ତ ପ୍ରଭାବଶାଳୀ ମୋତେ ହତ୍ୟାକରି ପାରନ୍ତି।

ପ୍ରୌଢ଼ - ଦୁଃଖ କ'ଣ ସେ ବରଂ ଭଲ । ତଥାପି ନିଜର କର୍ତ୍ତବ୍ୟରୁ ତିଳେ ମାତ୍ର ବିଚ୍ୟୁତ ନହୋଇ ମୃତ୍ୟୁର ସମ୍ମୁଖୀନ ହେବା ବୀରର କର୍ତ୍ତବ୍ୟ ସେଭଳି ମୃତ୍ୟୁ ଆଉ ଆତ୍ମହତ୍ୟା ତ ଏକା କଥା ନୁହେଁ। ଗୀତାର ସେଇ ମହାନ ବାଣୀକୁ ସ୍ମରଣ କର।

"ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗା, ଜିତ୍ୱାବା ଭୋକ୍ଷସେ ମହୀମ୍।
ତସ୍ମାଦୁତିଷ୍ଠ କୌନ୍ତେୟ, ଯୁଦ୍ଧାୟ କୃତ ନିଶ୍ଚୟଃ"॥

କୁନ୍ତଳା - କହିବା ଯେତେ ସହଜ କରିବା ଆଦୌ ସହଜ ସାଧ ନୁହେଁ। ସେଥିପାଇଁ ଏକ ଦୀର୍ଘ ସଂଗ୍ରାମର ଆବଶ୍ୟକତା ଅଛି।

ପ୍ରୌଢ଼ - ମହାଭାରତର ସଂଗ୍ରାମ, ନ୍ୟାୟ ଆଉ ଅନ୍ୟାୟର ସଂଗ୍ରାମ, ସତ୍ୟ ଆଉ ମିଥ୍ୟାର ସଂଗ୍ରାମ ସମର୍ପଣ ଆଉ ଅହଙ୍କାରର ସଂଗ୍ରାମ।

କୁନ୍ତଳା - ହେଲେ ମୁଁ କଳଂକ ମୁକ୍ତ ହେବି କିପରି ?

ପ୍ରୌଢ଼ - ଯେତେ ଦିନ ପର୍ଯ୍ୟନ୍ତ ଆପଣଙ୍କର ଅନାବିଳ ସେହି ସମ୍ପର୍କକୁ କଳଂକ ବୋଲି ଭାବୁଥିବେ ସେତେ ଦିନ ପର୍ଯ୍ୟନ୍ତ ଆପଣ କଳଙ୍କିତ ହୋଇ ରହିଥିବେ। ଯେଉଁଦିନ ଶକୁନ୍ତଳା ଭଳି ଆତ୍ମଶୋଧନ ଆରମ୍ଭ କରିବେ ସେଇଦିନ ଠାରୁ ଆତ୍ମସନ୍ତୋଷ ପାଇବେ। ଆତ୍ମତୃପ୍ତି ପାଇବେ।

କୁନ୍ତଳା - ତା'ହେଲେ ଅପରାଧୀ। ତା'ର କ'ଣ ହେବ ? ସେ କ'ଣ ଏମିତି ମୁକ୍ତ ଭାବରେ ବୁଲୁଥିବ ?

ପ୍ରୌଢ଼ - ଅପରାଧୀକୁ ଦଣ୍ଡିତ ହେବାର ବାକିପ୍ରକ୍ରିୟା ତ ଆରମ୍ଭ କରିବାକୁ ପଡିବ, ସମାଜକୁ ଏକତ୍ରୀତ କରି ସ୍ୱରଉତ୍ତୋଳନ କରିବାକୁ ପଡିବ, ସେଥିପାଇଁ ଧୈର୍ଯ୍ୟ ଦରକାର। କିନ୍ତୁ.....

କୁନ୍ତଳା - କିନ୍ତୁ ପୁଣି କ'ଣ ?

ପ୍ରୌଢ଼ - କିନ୍ତୁ ତା' ପୂର୍ବରୁ ଶପଥ କରିବାକୁ ହେବ ଯେ କୌଣସି ଅବସ୍ଥାରେ ମଧ ଆତ୍ମହତ୍ୟା କରିବେ ନାହିଁ। ସଂଗ୍ରାମର ପଥ ଅନେକ ଦୀର୍ଘ ଆଉ କଠୋର ହୋଇପାରେ ମାତ୍ର ଆତ୍ମହତ୍ୟାର ପଥ ଖୁବ୍ ଘୃଣାଦାୟକ, ଦୁର୍ବିସହ।

କୁନ୍ତଳା - (କେବଳ ଚୁପ୍ ହିଁ ରହି ଦୀର୍ଘଶ୍ୱାସ ପକାଇବେ)

ପ୍ରୌଢ଼ - ଶକୁନ୍ତଳା ନାଟକରେ ଶକୁନ୍ତଳା କଥା ଭାବନ୍ତୁ, ତାଙ୍କର ଅପରାଧୀ ଥିଲେ ସ୍ୱୟଂ ରାଜା, ସମାଜର ରକ୍ଷକ, ନ୍ୟାୟାଧୀଶ। ଶକୁନ୍ତଳାର ଫେରାଦ ହେବାର ସବୁ ରାସ୍ତା ବନ୍ଦଥିଲା। ସେ ତ ଚୁପ୍ ହିଁଥିଲେ ଆତ୍ମହତ୍ୟା କରିପାରିଥାନ୍ତେ।

କୁନ୍ତଳା - ସେ ହୁଏତ ରହିଁ ନଥିବେ ?

ପ୍ରୌଢ଼ - ନା ସେ ଜାଣିଥିଲେ ଯେ ଆତ୍ମହତ୍ୟା କୌଣସି ସମସ୍ୟାର ସମାଧାନ ହୋଇନପାରେ। ସମସ୍ୟାକୁ ସାମ୍ନା କରିବା ହିଁ ମଣିଷର କର୍ତ୍ତବ୍ୟ। କିଏ ଜାଣେ ଶକୁନ୍ତଳା ଭଳି ଆପଣଙ୍କର ଦୁଷ୍ମନ୍ତ ଦିନେ ହୁଏତ ଆପଣଙ୍କୁ ନିକଟକୁ ଫେରି ଆସିପାରନ୍ତି।

କୁନ୍ତଳା - ତାଙ୍କ ଉପରେ ମୁଁ ଆଉ ଭରସା କରିପାରୁନି।

ପ୍ରୌଢ଼ - ଭରସା ଯଦି ନଥିଲା ତା'ହେଲେ ଆପଣ ଏତେଦୂର ଆଗେଇ ଯାଉଥିଲେ କାହିଁକି ?

କୁନ୍ତଳା - ସେଇଟା ହୁଏ ଯୌବନର ଗୋଟିଏ ଭୁଲଥିଲା।

ପ୍ରୌଢ଼ - ପ୍ରତ୍ୟେକ ଭୁଲ ପାଇଁ ମଣିଷକୁ ପ୍ରାୟଶ୍ଚିତ କରିବାକୁ ପଡେ। ଦଣ୍ଡିତ ହେବାକୁ ପଡ଼େ। ଆପଣଙ୍କ ଭଳି ଆଜି ଆମ ସମାଜର ବହୁଯୁବକ ଯୁବତୀ ବୟସର ଦ୍ୱାହିଦେଇ, ଯୌବନର ଦ୍ୱାହିଦେଇ ପ୍ରତିଦିନ ପ୍ରତାରଣାର ଶିକାର ହେଉଛନ୍ତି। ଆଉ ସେଇ ଭୁଲର ପ୍ରତିଫଳ ସ୍ୱରୂପ ଆତ୍ମହତ୍ୟାର ପଥ ବାଛି ନେଉଛନ୍ତି । ଟିକିଏ ଚିନ୍ତା କରି ଦେଖିଲେ, ନିଜେ ଆତ୍ମହତ୍ୟା କଲା ପରେ ପ୍ରତିଶୋଧ ନେବ କିଏ ?

କୁନ୍ତଳା - ଠିକ୍ କଥା, ମୁଁ ଲଢେଇ କରିବାକୁ ପ୍ରସ୍ତୁତ ?

ପ୍ରୌଢ଼ - ଆପଣଙ୍କ ନିଜ ଗର୍ଭରେ ବଢୁଥିବା ଭ୍ରୁଣ ଶିଶୁ ବିଷୟରେ କ'ଣ ଚିନ୍ତା କରୁଛନ୍ତି ଶୁଣେ ? ଏକଥା ପଚାରିବେ ନାହିଁ ଯେ ସେ କଥା ମୁଁ କେମିତି ଜାଣିଲି।

କୁନ୍ତଳା - ସେ କଥା ମୁଁ ଚିନ୍ତା କରିନି।

ପ୍ରୌଢ଼ - ଆଜିକାଲି ଅନେକ ଯୁବତୀ ଭ୍ରୁଣ ହତ୍ୟାକରି ପୁଣିଥରେ କୁମାରୀ ହେବାକୁ ପଶ୍ଚାତପଦ ହେଉ ନାହାଁନ୍ତି। ତାହା ଅସମ୍ଭବ ନୁହେଁ କି ଆଇନ ମଧ୍ୟ ସେଥିରେ ପ୍ରତିବାଦ କରିବ ନାହିଁ। କିନ୍ତୁ ତା'ଦ୍ୱାରା ପିତୃତ୍ୱର ପ୍ରମାଣ ଆପଣଙ୍କୁ ହରାଇବାକୁ ପଡିବ। କାରଣ ଶିଶୁଟି ବଞ୍ଚିକରି ଥିଲେ ଆଜି ନ ହେଲେ କାଲି D.N.A. Test କରି ଆପଣ ଆପଣଙ୍କର ସମ୍ପର୍କକୁ ପ୍ରମାଣିତ କରିପାରିବେ।

କୁନ୍ତଳା - କୌଣସି ପରିସ୍ଥିତିରେ ମଧ୍ୟ ମୁଁ ଭ୍ରୁଣ ହତ୍ୟା କରିବି ନାହିଁ ବୋଲି ସ୍ଥିର କରିଛି।

ପ୍ରୌଢ଼ - ଶକୁନ୍ତଳାର ୨ୟ ସର୍ଗରେ ବି ତା'ହେଲେ ଆପଣ ରାଜି ଦେଖୁଛି ?

କୁନ୍ତଳା - ଆପଣ କ'ଣ ଜଣେ ସାମ୍ବାଦିକ ?

ପ୍ରୌଢ଼ - ନା ତ....ସେମିତି କାହିଁକି କହିଲେ ?

କୁନ୍ତଳା - ସାକ୍ଷାତକାର ନେଲାଭଳି ପ୍ରଶ୍ନସବୁ କରୁଛନ୍ତି।

ପ୍ରୌଢ଼ - ଏହାକୁ ଆତ୍ମସାକ୍ଷାତକାର ବୋଲି କହିପାରନ୍ତି। ଆଚ୍ଛା କହିଲେ ଆପଣଙ୍କର ଅତି ପ୍ରୀୟତମ ମଣିଷସବୁ କିଏ ?

କୁନ୍ତଳା - ମାନେ ?

ପ୍ରୌଢ଼ - ଓହୋ-ଆପଣଙ୍କର ପ୍ରେମିକ ବ୍ୟତୀତ ?

କୁନ୍ତଳା - ବାପା, ମାଆ, ଭଉଣୀ।

ପ୍ରୌଢ଼ - ସେମାନଙ୍କର ଦାୟିତ୍ୱ ନିଶ୍ଚୟ ଆପଣଙ୍କର ଉପରେ ?

କୁନ୍ତଳା - ବୁଝିଗଲି। ସେ ଦାୟିତ୍ୱ ମୁଁ ଅବଶ୍ୟ ବହନ କରିବି।

ପ୍ରୌଢ଼ - ବାଃ- ତା'ହେଲେ ଏଥର ତ ରାସ୍ତା ନିର୍ଦ୍ଦିଷ୍ଟ ଆଉ ପ୍ରଶସ୍ତ ହୋଇଗଲା। ଆଉଡେରି କାହିଁକି ?

"ତସ୍ମାଦୁତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟ।"

କୁନ୍ତଳା - ଧନ୍ୟ ଆପଣଙ୍କର କଥା କହିବାର ଶୈଳୀ... ମୋତେ ଆପଣ ମୋ ଜୀବନର ଏ ବିଶାଦ ଯୋଗରୁ ଈଶ୍ୱରଙ୍କ ଭଳି ଆସି ରାସ୍ତା ଦେଖାଇଦେଲେ। ମୋ ହାତରେ ଗାଣ୍ଡିବବି ଧରାଇ ଦେଲେ। କିନ୍ତୁ ମୁଁ ଏଥିରେ ଗୁଣ ଚଢ଼ାଇ ପାରିବି କି ନାହିଁ କେଜାଣି।

ପ୍ରୌଢ଼ - 'ଅଭ୍ୟାସେନ ତୁ କୌନ୍ତେୟ' ଅଭ୍ୟାସ କଲେ ଅସମ୍ଭବ ବି ଦିନେ ସମ୍ଭବ ହୋଇପାରେ। ଛାଡନ୍ତୁ ସେ କଥା। ଏଥର ମୋତେ ଯିବାକୁ ପଡିବ। ରାତି ଅନେକ ହେଲାଣି । ସେ ମଧ ଖୁବ୍ ବ୍ୟସ୍ତ ହେବେଣି। କିନ୍ତୁ ଆଉ ଟିକିଏ ଚା'......

କୁନ୍ତଳା - sure.... ବସନ୍ତୁ ମୁଁ ଚା' କରି ଆଣୁଛି। (ଯାଉଯାଉ) ଆପଣ ମୋ ମନକଥା କହିଲେ ମୋର ବି ଏବେ ଚା'ପିଇବାକୁ ଭୀଷଣ ଇଚ୍ଛା ହେଉଥିଲା। ଆଚ୍ଛା ଆପଣଙ୍କ ପରିଚୟ ତ ଦେଲନି ?

ପ୍ରୌଢ଼ - ଆଗ ଆପଣଙ୍କ ପରିଚୟ ଦିଅନ୍ତୁ।(ଲେଖୁଥିଲେ)

କୁନ୍ତଳା - (ଭିତରୁ) "କୁନ୍ତଳା" ମୋ ନାଁ।

ପ୍ରୌଢ଼ - କ'ଣ କହିଲେ ଶକୁନ୍ତଳା ? ବିସ୍କୁଟ ଦି'ଖଣ୍ଡ ଆଣିଥିବେ । ତା'ମାନେ ପୁନଶ୍ଚ ଶକୁନ୍ତଳା ?

କୁନ୍ତଳା - ନା ନା ଶକୁନ୍ତଳା। ନୁହେଁ କୁନ୍ତଳା । (ପ୍ରୌଢ଼ଙ୍କ ପ୍ରସ୍ଥାନ । ପ୍ରବେଶ କଲେ କୁନ୍ତଳା)

କୁନ୍ତଳା - ନିଅନ୍ତୁ ଚା' ଆଉ ବିସ୍କୁଟ (ଚାରିଆଡେ ଦେଖି) କୁଆଡେ ଗଲେ। ଏଇଠି ତ ବସିଥିଲେ। (ଚିଠି ଦେଖି ପଢ଼ିଲା)

ପ୍ରିୟ କୁନ୍ତଳାମାନଙ୍କୁ !

ମୋର ସଶ୍ରଦ୍ଧ ସ୍ନେହ ସମ୍ଭାଷଣ......

ଶକୁନ୍ତଳା ନାଟକର ସାହିତ୍ୟିକ ସଫଳତା ଦେଖି ନାରୀଚରିତ୍ରରେ ମୋହନୀୟତା ସୃଷ୍ଟି କରିପାରିଥିବାରୁ ମୁଁ ଯଥେଷ୍ଟ ଆତ୍ମ ସନ୍ତୋଷ ପାଇଥିଲି। ଆଜି କିନ୍ତୁ ତୁମ ସହିତ ସାକ୍ଷାତକାର ହେଲାପରେ ମୋମନରେ ସେଇ ଗୋଟିଏ ପ୍ରଶ୍ନ, ଶକୁନ୍ତଳାର ଚରିତ୍ର ସୃଷ୍ଟିକରି ମୁଁ କ'ଣ ଆଜିର ସମାଜକୁ ସଠିକ୍ ବାର୍ତ୍ତା ଦେବାରେ ବିଫଳ ହୋଇଛି ? ଭାବୁଛି ତୁମ ଭଳି କୁନ୍ତଳା ମାନଙ୍କୁ ନେଇ ମୋତେ ପୁଣି ଏକ ନାଟକ ଲେଖିବାକୁ ପଡିବ ହୁଏତ ବା ତା'ର ନାମ ହେବ କୁନ୍ତଳା ନୁହେଁ, ଶକୁନ୍ତଳା...ଇତି, କାଳି-ଦାସ।

କୁନ୍ତଳା - କାଳି ଦାସ ! ଆଃ...ଶକୁନ୍ତଳା ନାଟକର ମହାନ୍‌ନାଟ୍ୟକାର କାଳିଦାସ ! ଆପଣ ମୋତେ କ୍ଷମା କରିଦିଅନ୍ତୁ କବିବର ! ଆପଣଙ୍କୁ ଚିହ୍ନି ନ ପାରି ମୁଁ ଦୁଃଖିତ। ପୁଣି ଆପଣଙ୍କୁ ନାନା କଥା କହି ଅପମାନିତ କରିଥିବାରୁ ମୁଁ ମର୍ମାହତ। ମାତ୍ର କ୍ଷମାକରିବେ ! ପୁଣି ଏକ ଶକୁନ୍ତଳା ହେବାକୁ ମୋର ଶକ୍ତି ଓ ସାମର୍ଥ ବା ମୋତେ କେତେ ସହଯୋଗ କରିବ ମୁଁ ଜାଣେନା। ତେଣୁ ଆପଣ ଦୟାକରି ମୋତେ ସେଇ କୁନ୍ତଳା ରୂପରେ ହିଁ ବଞ୍ଚିବାକୁ ଦିଅନ୍ତୁ। ମୁଁ କୁନ୍ତଳା,.... ନୁହେଁ ଶକୁନ୍ତଳା।

**(ଅନ୍ଧାର)**

## (୧ମ ଦୃଶ୍ୟ)

(ଡ୍ରଇଂରୁମରେ ବସିଛନ୍ତି ଛବି ଓ ହିତେଶ। ଦୁହେଁ ଗମ୍ଭୀର)

ଛବି - କେବେ India ଛାଡୁଛ ?

ହିତେଶ - ଆଉ ୧୫ ଦିନ ରହିଲା।

ଛବି - Passport ଆଉ Visa- ମିଳିଗଲାଣି ?

ହିତେଶ - ହଁ। Flight Ticket ମଧ୍ୟ କମ୍ପାନୀ ଆଜି ପଠେଇ ଦେଇଛି।

ଛବି - (ଦୀର୍ଘଶ୍ୱାସ) All the best. Happy Jurney and Sucssesful staying.

ହିତେଶ - Thank you. ଆଉ କିଛି କହିବନି ?

ଛବି - କହିବାର କଥା ତ ଅନେକ କିଛି ଅଛି। କିନ୍ତୁ କହିବି କାହାକୁ ?

ହିତେଶ - କାହିଁକି ? ମୋତେ କହିବ।

ଛବି - କଥାରେ କହନ୍ତି- "ଚେଇଁ ଶୋଇଥିବ ଯିଏ, ତାକୁ ଉଠେଇବ କିଏ ?" ଜାଣି ଅଜଣା ବୋଲି କହି ହେଉଥିବା ଲୋକକୁ ନୂଆକରି କହିବାର କ'ଣ ବା ଲାଭଅଛି ?

ହିତେଶ - ତଥାପି କହିବାରେ ଆପତ୍ତି କ'ଣ ଅଛି।

ଛବି - ଆମର ପ୍ରଥମ ପରିଚୟରୁ ଆଜିପର୍ଯ୍ୟନ୍ତ ପ୍ରାୟ ତିନିବର୍ଷ ବିତିଗଲାଣି ନୁହେଁ ?

ହିତେଶ - ହଁ ହୋଇଥିବ।

ଛବି - ଆଉ ଯା ଭିତରେ ତୁମେ କହିଥିବା କେତେ ଆଶା ଆଶ୍ୱାସନାର ଶବ୍ଦ ସବୁ ଇତିହାସ ହୋଇ ସାରିଲାଣି। ଠିକ୍ ସେମିତି ଆଉ କିଛି ଦିନ ପରେ ଆମ ଭଲ ପାଇବାର ଘଟଣାଟା ବି ସମାଧି ନେବାକୁ ଅପେକ୍ଷା କରିଛି।

ହିତେଶ - ସେମିତି କାହିଁକି ଭାବୁଛ ? ମାତ୍ର ୨ ବର୍ଷର କଥା ତ। ଗହୁଁ ଗହୁଁ କଟିଯିବ। ମୁଁ ଶୁଣିଛି ପ୍ରତୀକ୍ଷାର ଫଳ ଖୁବ୍ ମିଠା।

ଛବି - ଠିକ୍ ଶୁଣିଛ....। କିନ୍ତୁ ଫଳଟି ପାଚିବା ଆଗରୁ ଝଡିପଡିଲେ ବା ପଚିଗଲେ ମିଠା ହେବ କି ଦୁର୍ଗନ୍ଧ ହେବ ସେକଥା କହିବା ଦରକାର ନାହିଁ।

ହିତେଶ - ଆମ ସମ୍ପର୍କ ତା'ହେଲେ ସେମିତି ହେବ ବୋଲି ତୁମର ଧାରଣା।

ଛବି - ସେ କଥା ମୋ ଅପେକ୍ଷା ତୁମେ ବେଶି କହି ପାରିବ। ଅବଶ୍ୟ ଯଦି ସତ କହିବାକୁ ଗହୁଁ ଥାଅ।

ହିତେଶ - କହିବାକୁ ଆରମ୍ଭ କଲଣି ଯଦି। ତୁମେ ହିଁ କହିଦିଅ।

ଛବି - ସେ କଥା ମୁଁ କିମିତି କହିବି ? ମୁଁ ତ ଭବିଷ୍ୟତ ଇଛା ନୁହେଁ କି ଅନ୍ତର୍ଯ୍ୟାମୀ ମଧ୍ୟ ନୁହେଁ। ସେ କଥା ମୋ ଅପେକ୍ଷା ବରଂ ତୁମେ ବେଶି କହିପାରିବ କାରଣ ତୁମ ଅନ୍ତରର କଥା ତୁମକୁ ହିଁ ଜଣା।

ହିତେଶ - ଓ.... ମୋ ଉପରେ ତା'ହେଲେ ତୁମର ବିଶ୍ୱାସ ନାହିଁ ଦେଖୁଛି ?

ଛବି - (ହସିଛି) ବିଶ୍ୱାସ କରୁଥିବା ବ୍ୟକ୍ତିମାନେ ହିଁ ସବୁବେଳେ ସହଜରେ ଧୋକାଖାଇ ଯାଆନ୍ତି। ଏବଂ ବିଶ୍ୱାସଘାତ କରୁଥିବା ବ୍ୟକ୍ତିମାନେ ହିଁ ବିଶ୍ୱାସ କରୁଥିବା ଲୋକମାନଙ୍କୁ ବୋକା ବୋଲି ଭାବନ୍ତି, ମୁର୍ଖ ବୋଲି ଭାବନ୍ତି। ଆଉ ନିଜକୁ ଖୁବ୍ ଚଲାଖ ଏବଂ ବୁଦ୍ଧିମାନ ବୋଲି ପରିଚୟ ଦେଇଥାନ୍ତି।

ହିତେଶ - ତୁମେ ତା'ହେଲେ ମୋତେ କ'ଣ ବୋଲି ଭାବୁଛ ?

ଛବି - ମୁଁ କିନ୍ତୁ ନିଜକୁ ଏତେ ଅତ୍ୟଧିକ ଚାଲାଖ ହେବା ଅପେକ୍ଷା ବୋକା ବୋଲି ପରିଚିତ ହେବାକୁ ମୋର ପ୍ରଥମ ପ୍ରସନ୍ଦ ବୋଲି ଭାବି ନେଇଛି ।

ହିତେଶ - ତା'ମାନେ ତୁମେ ମୋତେ ଅତ୍ୟଧିକ ବୁଦ୍ଧିମାନ ବୋଲି ମନେମନେ ସ୍ୱୀକାର କରିନେଇଛ ?

ଛବି - ସମ୍ଭବତଃ ସ୍ୱୀକାର କରିନେବାକୁ ବାଧ ହୋଇଛି । ଆଉ ସେଇଥି ପାଇଁ ମୋ ଜେଜେ ବାପା ଆଉ ବିଧବା ମାଆଙ୍କର ପ୍ରସ୍ତାବକୁ ନମ୍ରତାର ସହିତ Avoid କରିବାର ଚେଷ୍ଟା କରିଆସିଛି ।

ହିତେଶ - ତୁମ ଜେଜେ କ'ଣ ଆଉ କେଉଁଠି ବିବାହ ପ୍ରସ୍ତାବ ଦେଇଛନ୍ତି ?

ଛବି - ଏଭଳି ପରିସ୍ଥିତିରେ ସେମିତି ପ୍ରସ୍ତାବ ଆସିଥିଲେ ତୁମେ ବୋଧହୁଏ ବେଶୀ ଖୁସି ହୋଇଥାନ୍ତ ନୁହେଁ?

ହିତେଶ - ନା.....ସେମିତି ନୁହେଁ। ମୁଁ କେବଳ ତାଙ୍କର ପ୍ରସ୍ତାବ ସମ୍ପର୍କରେ ଜାଣିବାକୁ ଚାହୁଁଥିଲି ।

ଛବି - ତାଙ୍କର ପ୍ରସ୍ତାବ ଥିଲା ଯେ ବିଦେଶ ଯିବା ପୂର୍ବରୁ ଆମର ବାହାଘର ପାଇଁ ତୁମ ଉପରେ ମୁଁ ଚାପ ସୃଷ୍ଟି କରି ଥାନ୍ତି । ତୁମକୁ ପ୍ରବର୍ତ୍ତାଇ ଥାନ୍ତି । ମାତ୍ର ମୁଁ ସେଥିରେ ସମ୍ମତି ପ୍ରଦାନ କରିନାହିଁ ।

ହିତେଶ - କାହିଁକି ?

ଛବି - ଲାଭ କ'ଣ ? ମୁଁ ଏମିତି ଅନେକଙ୍କୁ ଦେଖିଛି, ଜାଣିଛି ଯେଉଁମାନେ ବିଦେଶ ଯିବା ଆଗରୁ ବିବାହ କରି ବିଦେଶ ଯାଇଛନ୍ତି ଆଉ ଫେରି ଆସି ନାହାଁନ୍ତି ।

ହିତେଶ - ତୁମେ ଠିକ୍ କରିଛ । ଯିଏ କାଲି ଧୋକା ଦେଇ ପାରିବ ସେ ଆଜି ମଧ ଧୋକା ଦେଇ ପାରିବ ।

ଛବି - ଥାଉ ସେ କଥା - ସମୟ ତା'ର ଉତ୍ତରଦେବ । ବର୍ତ୍ତମାନ ପାଇଁ ତୁମର ଖୁସି ମନାଇବା ଦରକାର ।

ହିତେଶ - ଚାଲ ଆଜି ବାହାରେ କେଉଁଠି Dinner କରିବା ।

ଛବି - ଘରର ଖୁସି ଘରେ ନ ମନାଇ ବାହାରେ ମନାଇବା କାହିଁକି ? ତୁମେ ଅପେକ୍ଷା କର ମୁଁ ପୁରୀ ତରକାରି ତିଆରି କରି ଦେଉଛି ଯାଭିତରେ ରାତି ବି' ଅଫିସ ରୁ ଫେରି ଆସିଥିବ । ସମସ୍ତେ ମିଶି ଖାଇବା ।

ହିତେଶ - Infect- ଆଜି ସାଙ୍ଗମାନଙ୍କ ସାଙ୍ଗରେ Dinner କରିବାର ଅଛି । ବରଂ ଆଉ କେବେ ଆସିବି.... ।

ଛବି - ହଉ ତୁମ ଇଚ୍ଛା । ତେବେ ଆଉ କେବେ ଆସିବାଟା ଏବେ କେବେ ନା ବିଦେଶରୁ ଫେରିବା ପରେ..... ।

ହିତେଶ - ମୁଁ ଯାହା ଅନୁମାନ କରିପାରୁଛି ଯେ ମୋର ବିଦେଶଯିବା ନେଇ ତୁମେ ଆଦୌ ଖୁସି ନୁହେଁ।

ଛବି - କେମିତି ଜାଣିଲ ?

ହିତେଶ - ତୁମକୁ ସାଙ୍ଗରେ ନେଇ ପାରିଥିଲେ ତୁମେ ହୁଏତ ଖୁସି ହୋଇଥାନ୍ତ ନୁହେଁ ? ସତ କହିଲ.....ମୁଁ କ'ଣ ମିଛ କହୁଛି ?

ଛବି - ନା...ବିଲକୁଲ ଠିକ୍ କଥା କହିଛ । Infect ତୁମ ବିଦେଶ ଯିବାର ଖବର ଶୁଣି ମୁଁ ଖୁବ୍ ଖୁସି ହୋଇଯାଇଥିଲି । ତା'ପରେ ନିଜର ଭବିଷ୍ୟତକୁ ତୁମ ଜୀବନ ସହିତ ଯୋଡିବାର ସମ୍ଭବନାକୁ ଦେଖି ଆଶା ନିରାଶାର ଦୋଛକିରେ ଠିଆ ହୋଇ ମୁଁ ଖୁବ୍ ଦୁଃଖୀ ହୋଇଯାଇଥିଲି । ଏବେ କିନ୍ତୁ ମୁଁ ବେଶ ଖୁସିଯେ.....ନା...ଥାଉ ।

ହିତେଶ - କୁହ ରହିଗଲ କାହିଁକି ?

ଛବି - ନା...ମୋ ବ୍ୟକ୍ତିଗତ ପ୍ରତିକ୍ରୀୟାରେ ମୁଁ ତୁମ ସୁଖର ସ୍ୱପ୍ନକୁ ଜଳାଞ୍ଜଳୀ ଦେବାକୁ ଉତ୍ସାହିତ କରିବି କାହିଁକି ? ମୁଁ ସୁଖୀ ହୁଏ ଅଥବା ଦୁଃଖୀ ସେ ତ ମୋର ବ୍ୟକ୍ତିଗତ ପାଉଣା । ମୋର Emotion, ମୋର ଆବେଗ ସହିତ ଆଉ କାହାକୁ ଛନ୍ଦିବାର ମାନେ କିଛି ନାହିଁ ।

ହିତେଶ - ତୁମ ଆଖିର କଥା....ତୁମ ଓଠ ତଳର ବ୍ୟଥା ଆଜି ଅଚାନକ ତୁମ ମନର ଅନେକ ପୃଷ୍ଠା ଖୋଲି ଦେଇଛି ।

ଛବି - ଏବେ ସେ ସବୁ ପୃଷ୍ଠାକୁ ତୁମେ ପଢିବକି ନାହିଁ ସେଇଟା ତୁମର ଇଚ୍ଛା। ମୁଁ କିନ୍ତୁ ବାଧ କରିବି ନାହିଁ। କି ପ୍ରତିକ୍ରିୟା ଲୋଡିବି ନାହିଁ।

ହିତେଶ - ପ୍ରକୃତରେ ମୁଁ ଆଜି ତୁମକୁ ଏକ ଭିନ୍ନ ରୂପରେ ଦେଖି ପାରୁଛି।

ଛବି - ଠିକ୍ Dressing table ଆଗରେ ଠିଆହୋଇ ନିଜର ରୂପକୁ ନିରେଖି ଦେଖିଲା ଭଳି ନୁହେଁ ?

ହିତେଶ - ଛବି ପ୍ରକୃତରେ ତୁମର ଉଦ୍ଦେଶ୍ୟ କ'ଣ ?

ଛବି - ତୁମକୁ ସୁଖୀ ଦେଖିବା ହିଁ ମୋର ପ୍ରଥମ ଉଦ୍ଦେଶ୍ୟ। ଆଶା କରେ ବିଦେଶ ଯାତ୍ରା ତୁମର ସଫଳ ହେବ।

ହିତେଶ - ଏହା କ'ଣ ତୁମର ଆନ୍ତରିକ ଇଚ୍ଛା ନା.....

ଛବି - ଏଥିରେ ତୁମର ସନ୍ଦେହ ରହିବା ଆଦୌ ଉଚିତ ନୁହେଁ।

ହିତେଶ - ଛାଡ...ମୁଁ ଏବେ ଯାଉଛି।

ଛବି - ପୁଣିକେବେ ଦେଖାହେବ ?

ହିତେଶ - ଜାଣେନା....। ହୁଏତ ବିଦେଶରୁ ଫେରିଲେ।

ଛବି - (ହସିଛି)

ହିତେଶ - ଏମିତି ହସିଲ କାହିଁକି ?

ଛବି - ଅନେକ ଦିନ ତଳେ ଗୋଟିଏ Autoରେ ଅଫିସରୁ ଫେରିଥିଲି। ଘରେ ଛାଡିଦେଇ ଅଟୋଟି ଫେରିଗଲା ବେଳେ ଦେଖିଲି ତା'ପଛରେ ଲେଖାଅଛି। "ମୁଁ ଫେରିଲେ ତୁମର" ଅଥଚ ଆଜି ଯାକେ ସେ Auto ସହିତ ମୋର କେବେବି ଦେଖା ହୋଇନି।

ହିତେଶ - ତୁମେ ମୋତେ ଆଘାତ ଦେବାକୁ ଚହୁଁଛ ?

ଛବି - ନିଜ ହାତରେ ଲଗେଇ ଥିବା ଗଛକୁ ଯେମିତି କାଟି ଦେବାକୁ ହାତ ଯାଏ ନାହିଁ, ସେମିତି ନିଜମନର ପ୍ରଥମ ପ୍ରେମକୁ ଯେତେ ଚହିଁଲେ ବି ଏଡେଇ ଦେଇ ହୁଏନି। ତେବେ ସେଇ ପ୍ରେମ ଯଦି ରାଗ ଆଉ ଅଭିମାନ ଭିତରର ଦୂରତ୍ୱ କୁ ଚିହ୍ନି ନ ପାରିଲା ତା'ହେଲେ ସେ ଭୁଲ କାହାର ?

ହିତେଶ - ତୁମେ କ୍ରମେ କ୍ରମେ ଭାବ ପ୍ରବଣ ହୋଇ ପଡୁଛ। ଅଥଚ ତୁମେ ଭଲଭାବେ ଜାଣଯେ ଭାବ ପ୍ରବଣତା ମଣିଷକୁ ବୁଦ୍ଧି ଭ୍ରଷ୍ଟ କରାଏ।

ଛବି - ଭାବପ୍ରବଣ ମଣିଷ ହିଁ ପ୍ରେମ କରିପାରେ। ତ୍ୟାଗ କରିପାରେ, ଆତ୍ମବଳୀ ଦେଇପାରେ। ଅତ୍ୟନ୍ତ ବୁଦ୍ଧିମାନ ମଣିଷମାନେ ତାହା କରିପାରନ୍ତି ନାହିଁ। ନିଜର ଲାଭ କ୍ଷତିର ହିସାବ କରୁକରୁ ମଣିଷପଣିଆର ହିସାବଟା ଅନେକ ପଛରେ ପଡିଯାଏ। ତୁମେ ଶୁଣିଥିବ ଅତି ବୁଦ୍ଧିରେ କାଉ କ'ଣ ଖାଏ ? ତେବେ ସେ ସବୁ କଥା ଥାଉ । ମୋର ଏଇ କ୍ଷୁଦ୍ର ବୁଦ୍ଧି ମୋ ପାଇଁ ଯଥେଷ୍ଟ। ମୁଁ ଆଉ କାହାର ବିଚକ୍ଷଣ ବୁଦ୍ଧିକୁ ଉଧାର କରି ମହାଜ୍ଞାନୀ ହେବାକୁ ଚହେଁନା। ମୁଁ ଯେମିତି ଅଛି ଭଲରେ ଅଛି। ଆଶାକରେ ଆଗକୁ ଯେମିତି ରହିବି, ଭଲରେ ରହିବି। ମୋ ପାଇଁ ତୁମର ଦୁଃଖ କରିବା ଦରକାର ନାହିଁ। ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ତୁମେ ବି ଯେଉଁଠି ରୁହ ସୁଖରେ ରୁହ, ଆନନ୍ଦରେ ରୁହ, ବାଶ୍ ।

ହିତେଶ - କ'ଣ ଆତ୍ମବଳିଦାନ।....

ଛବି - ତୁମ ଭାଷାରେ ତୁମେ ଏହାର ନାମକରଣ କ'ଣ ବି କରିପାର। ମୋର ଜାଣିବାର ଇଚ୍ଛା ନାହିଁ କିନ୍ତୁ ମୋ ଭାଷାରେ ଏହାକୁ ଭଲପାଇବା କହନ୍ତି। ଭଲ ପାଇବାରେ ପ୍ରତିଦାନର ହିସାବ କରାଯାଏନା-ବରଂ କେବଳ ଦେବାରେ ହିଁ ଆନନ୍ଦ ମିଳେ । ଆତ୍ମସନ୍ତୋଷ ମିଳେ।

ହିତେଶ - ଏମିତି ଯୁକ୍ତି ତର୍କ ଭିତରେ ସଞ୍ଜ ଗଡିରାତି ହେଲାଣି। ମୁଁ ଏଥର ଯାଏ, ସାଙ୍ଗମାନେ ଆସି ତେଣେ hotel ରେ ପହଞ୍ଚି ଯିବେଣି।

ଛବି - ତା'ହେଲେ ଏଠି ଖାଇବ ନାହିଁ?

ହିତେଶ - ପୋଡିଗଲା ତିଅଣରେ କ'ଣ ବା ସୁଆଦଥାଏ।

ଛବି - (ହସି) ତିଅଣତ ଏ ପର୍ଯ୍ୟନ୍ତ ଚୁଲି ଉପରକୁ ଯାଇନି, ଆଉ ପୋଡିଗଲା କେତେବେଳେ? ଓ ହୋ...ବୁଝିଗଲି... ଏବେଠୁ ମନେ ମନେ ତୁମକୁ ତିଅଣ ପୋଡି ହେବାର ବାସ୍ନା ବାରି ହେଲାଣି (ବାହାରୁ ପ୍ରବେଶ କଲା ରାତି)

ରାତି - ଭିତରକୁ ଆସିପାରେକି?

ହିତେଶ - ନିଜ ଘରକୁ ଆସିବା ପାଇଁ ପୁଣି Perimission ଦରକାର କରୁଛ?

ରାତି - (ପଶିଆସି) ମୋ ଘରକୁ ମୋ ଅଜାଣତରେ ପରା ଆଉ କିଏ ଜଣେ ପଶି ଆସି ଜବର ଦଖଲ କରିନେଲାଣି।

ହିତେଶ - ନାଇଁ ନାଇଁ ତୁମେ ଦୁଇସାଙ୍ଗ ବସି ଗପସପ ହୁଅ ମୁଁ ଏବେ ଆସୁଛି।

ରାତି - ଆରେ ନା ନା ବସନ୍ତୁ Dinner କରି ଯିବେ, By the way congrats.

ହିତେଶ - Thanks- ବୁଝିଲ "ରାତି" ଗାଁରେ କହନ୍ତି ରାନ୍ଧିବା ଲୋକର ଆଗ୍ରହ ଆଉ ଆବେଗକୁ ନେଇ ଖାଦ୍ୟର ସ୍ୱାଦ ବାରିହୋଇ ଯାଏ- ଏଠି ତ ରାନ୍ଧିବା ଲୋକର ମୁହଁ ହାଣ୍ଡି । ଖାଇବାର ସ୍ୱାଦ ଆଉ କ'ଣ ଥିବଯେ କିଏ ଆଗ୍ରହରେ ଖାଇବ।

ରାତି - କି କଥା କହୁଛନ୍ତି ହିତେଶ ବାବୁ! ଆଜି କ'ଣ ଭିନ୍ନ ସ୍ୱର ଶୁଣିବାକୁ ମିଳୁଛି। ଏଇଟା ବିଦେଶ ଯାତ୍ରାର ପୂର୍ବାଭାସ ନା ଦେଶ ଛାଡିବାର ପୂର୍ବଭାସ।

ଛବି - ସେ କଥା ଏବେ ଥାଉ ରାତି....ବାପ ରାଣ ଢିଙ୍କିଗିଳ କହି ଜବରଦସ୍ତି ଖୁଆଇଲେ ଅଜିର୍ଣ୍ଣ ହୋଇ ଦେହ ଖରାପ ହେବା ସାର ହେବ।

ରାତି - ଆରେ ବାପ୍‌ରେ ବାପ୍; ଆଜି କ'ଣ ଦୁଇପକ୍ଷରୁ ଯୁଦ୍ଧର ହୁଙ୍କାର। ଏବେ ଶାନ୍ତିବାର୍ତ୍ତା ନିରର୍ଥକ ମନେ ହେଉଛି। ଠିକ୍ ଅଛି ତଥାପି ଯଦି ଦୁଇପକ୍ଷର ଆପତ୍ତି ନଥାଏ ତା'ହେଲେ ମୁଁ ଶାନ୍ତିଦୂତର ଭୂମିକାରେ ଅଭିନୟ କରିବାକୁ ପ୍ରସ୍ତୁତ ଅଛି। (ସମସ୍ତେ ନିରବ) ଅନାହୁତ ପ୍ରବିଶତି, ଅପୃଷ୍ଟ ବହୁଭାଷତେ, ଅବିଶ୍ୱସ୍ତେ ବିଶ୍ୱସିତି ମୁଢ ଚେତା ନରାଧମ। ଠିକ୍ ଅଛି ନହେଲା ନାହିଁ। ଘୋଡ କମ୍ବଳ ପଡେ ରହୋ। ଉପର ଉପର ଜାନେ ଦୋ। ମୁଁ ବାବା ଚାଲିଲି... (ପ୍ରସ୍ଥାନ ଉଦ୍ୟତ)

ହିତେଶ - ମୁଁ ମଧ୍ୟ ଚାଲିଲି...... good Night (ପ୍ରସ୍ଥାନ) (ଛବି ହିତେଶର ଯିବାବାଟକୁ ଚାହିଁ ରହିଥିଲା। ଦୀର୍ଘଶ୍ୱାସ ପକାଇ ଫେରିଲା ବେଳକୁ ଦେଖିଲା ଠିଆ ହୋଇଛି ରାତି)

ରାତି - ହିତେଶ ବାବୁ ଆମେରିକା ଯାଉଛନ୍ତି ବୋଲି ତୁ ଭାଙ୍ଗି ପଡିଛୁ ନୁହେଁ?

ଛବି - ନିଜକୁ ଧିକ୍କାର କରୁଛି ଆଉ ମନେମନେ ହିସାବ କରୁଛି ଯେ ପ୍ରେମ କେତେମାତ୍ରାରେ ଅନ୍ଧ ହୋଇପାରେ। ଆଖି ଉପରୁ ପ୍ରେମର ପରଦା ହଟିଗଲା ପରେ ହିଁ ମଣିଷର ଅସଲରୂପଟା ପଦାକୁ ବାହାରି ଆସେ। ଭଲହେଲା, ବାହାଘର ଆଗରୁ ପରଦାଟା ହଟିଗଲା। ନହେଲେ ସାରାଜୀବନ ପସ୍ତେଇବାକୁ ପଡିଥାନ୍ତା।

ରାତି - ତୁ ପାଗଳଙ୍କ ଭଳି କ'ଣଯେ ଗପୁଛୁ, ମୁଁ କିଛି ବୁଝି ପାରୁନି।

ଛବି - ହିତେଶର ବିଦେଶ ଯିବା କଥା ଶୁଣି ମୋ ଜେଜେ ଆଉ ମୋ ମାଆ ଯେତେ ଶୀଘ୍ର ଆମର ବାହାଘର ହୋଇଯାଉ ବୋଲି ଚାହୁଁଥିଲେ.....ମୁଁ କିନ୍ତୁ ସେ କଥା ଉପରେ ଗୁରୁତ୍ୱ ଦେଇନଥିଲି କାରଣ କିଏ ଜାଣେ ବିଦେଶୀ ଚଢେଇ ଥରେ ଉଡିଗଲେ ଆଉ ଫେରିବକି ନାହିଁ?

ରାତି - ଏଇଟା ତୋ ମନର ଭ୍ରମ। ହିତେଶ ବାବୁ ସେମିତି ମଣିଷ ନୁହନ୍ତି।

ଛବି - ତୋ ତୁଣ୍ଡ ସୁତୁଣ୍ଡ ହେଉ। କିନ୍ତୁ ମୋ ମନରେ ଆଜି ଏକ ଭିନ୍ନ ସ୍ୱରରପ୍ରତିଧ୍ୱନୀ ଶୁଣାଯାଉଛି। ଛାଡ ସେକଥା କାରଣ ମୁଁ ଏବେ ମୋ ମନ ସ୍ଥିର କରି ନେଇଛି।

ରାତି - ତା'ହେଲେ ତୁ କ'ଣ ତାଙ୍କ ପାଇଁ ଅପେକ୍ଷା କରିବୁ ନାହିଁ ?

ଛବି - କହି ପାରିବି ନାହିଁ। ସମୟ ହିଁ ସେ ପ୍ରଶ୍ନର ଉତ୍ତର ଦେବ।

ରାତି - ଠିକ୍ ଅଛି..... ତୁ ଯଦି ଚାହିଁବୁ। ମୋ ଭାଇ ସାଙ୍ଗରେ ତୋର ବାହାଘର ପ୍ରସ୍ତାବ ପକେଇବି। ତୁ ତ ତାଙ୍କୁ ଦେଖିଛୁ। ଇଂଜିନେୟରିଂ ପାଶ୍ କରି Govt Job କରୁଛନ୍ତି। ମୋ ଭାଉଜ ହେବାକୁ ରାଜି ହେବୁ ନିଶ୍ଚୟ।

ଛବି - ସେ କଥା ପରେ ଦେଖାଯିବ। ଭୋକ ହେଲାଣି ରୁଟି ବନେଇବା ଚାଲ । (ପ୍ରସ୍ଥାନ ଉଦ୍ୟତ)

ରାତି - (ଧରି ପକାଇ) ସତ କହ ଛବି। ତୁ କ'ଣ ସତରେ ଭାଙ୍ଗି ପଡିଛୁ ?

ଛକ - ଛାଡ ମୋତେ, ମୁଁ ଯାଏଁ।

ରାତି - ମନ ଖୋଲିଦେ ଛବି। ମନ ଭିତରର ଦୁଃଖକୁ ବାଣ୍ଟିଦେ, ଦୁଃଖ ଲାଘବ ହେବ। ମୁଁ ପରା ତୋ ସାଙ୍ଗ। ତୋତେ ମୋ ରାଣ।

ଛବି - (ରାତିକୁ କୁଣ୍ଢେଇ ଧରି କାନ୍ଦିଉଠିଲା) ନିଜର ସୁଖକୁ ସିନା ସାଙ୍ଗ ସାଥି ବଂଧୁ ମାନଙ୍କ ଭିତରେ ବାଣ୍ଟି ଦେଲେ ସେମାନଙ୍କୁ ଖୁସି ଦେଇହେବ। ଆନନ୍ଦ ଦେଇ ହେବ। ହେଲେ ଦୁଃଖ ବାଣ୍ଟି ଅନ୍ୟକୁ ଦୁଃଖି କରାଇବାକୁ ମୁଁ ଚାହେଁନା।

ରାତି - ସୁଖ ବାଣ୍ଟିଲେ ଯେମିତି ବଢେ, ଦୁଃଖ ବାଣ୍ଟିଲେ ସେମିତି କମିଯାଏ। ମୋତେ ତୋର ସୁଖ ଦୁଃଖ ବାଣ୍ଟିବୁ ନି ତ ଆଉ କାହାକୁ କହିବୁ ? ତୋ ଭଳି ସାଙ୍ଗ, ଯିଏ ସବୁବେଳେ ଆମ୍ଭ ମାନଙ୍କୁ ସାହସ ଦିଏ। ଏଇ ପୁରୁଷ ପ୍ରଧାନ ସମାଜରେ ମୁଣ୍ଡ ଟେକି ଚାଲିବାର ଉପାୟ ବତାଏ। ସେଇ ଛବି ପୁଣି କାନ୍ଦୁଛି। ଏକଥା ତ ମୁଁ ବିଶ୍ୱାସ କରି ପାରୁନି।

ଛବି - ସବୁ ମଣିଷ କେଉଁଠି ନା କେଉଁଠି ବେଶ୍ ସ୍ପର୍ଶ କାତର ଆଉ ସେଇ ଦୁର୍ବଳତମ ସ୍ଥାନକୁ ଯେତେବେଳେ ଆଘାତ ଲାଗେ ହୃଦୟର ବେଦନା, ମନର କୋହ, ଆଖିର ଲୁହ ହୋଇ ଆପେ ଆପେ ଝରିଆସେ। ତାକୁ ଅଟକାଇ ହୁଏନା। ଛାଡ ସେ କଥା...ମୁଁ ଜାଣେ ମଣିଷର ସବୁ ସୁଖ ଆଉ ଦୁଃଖ ଦିନେ ଅତୀତ ହୋଇଯାଏ। ମୁଁ ମୋର ସେଇ ସ୍ୱପ୍ନର ଦିନ ଗୁଡିକୁ ଯଥାଶୀଘ୍ର ଇତିହାସ କରିଦେବାକୁ ଚାହେଁ। ହୁଏତ ଆଜିରାତିର ଅନ୍ଧାର ଫେରି ଯାଉ ଯାଉ କାଲିର ସକାଳ ଏ ଛବିର ଅନ୍ୟ ଏକ ରୂପକୁ ଆବିଷ୍କାର କରିବ।

ରାତି - (ଛବିର ଲୁହ ପୋଛିଦେଇ) Thats Like a good Girl. ତା'ହେଲେ ମୋ ଭାଇ ସାଙ୍ଗରେ ମୁଁ କାଲି ପ୍ରସ୍ତାବଟା ପକାଇବି ତ ?

ଛବି - ଏତେ ତରତର କିଆଁ। ଉଚିତ ସମୟ ଆସିଲେ ମୁଁ ତୋତେ ଜଣାଇବି। ଚାଲ ଏଥର ରୋଷେଇ ଘରକୁ ଯିବା।

ରାତି - ତୁ ଯାଆ ମୁଁ ଲୁଗାବଦଳାଇ ଆସୁଛି।
(ଦୁହେଁ ଭିନ୍ନ ଭିନ୍ନ Room କୁ ଗଲେ ଅନ୍ଧାର)

## ୨ୟ ଦୃଶ୍ୟ

(ମନ୍ଦିର ବେଢ଼ା। ସମୟ ସକାଳ। ଦେଖାଗଲା ଏକ ଛାୟା ନାରୀ ଛୋଟ କଅଁଳା ପିଲାଟିକୁ ଲୁଗାରେ ଗୋଡେଇ ସନ୍ତର୍ପଣରେ ଆସି ମନ୍ଦିର ବେଢାରେ ଥୋଇ ଦେଇ ଲୁଚିଗଲା କିଛି ସମୟ ପରେ Morning walk କରି ଫେରୁଥିବା ଛବି ସେଠାରେ ପହଞ୍ଚିଲା। ପିଲାଟିର କାନ୍ଦ ଶୁଣି ପାଖକୁ ଆସିଲା। ଏପଟ ସେପଟ ଅନାଇ ପିଲାଟିକୁ କୋଳରେ ଧରିଲା ପିଲାଟିର ସମ୍ପର୍କୀୟକୁ ଖୋଜିଲା-ଡାକିଲା...)

ଛବି - କିଏ ଏ ପିଲାର ବାପା, ମାଆ.....ଅବା ସମ୍ପର୍କୀୟ ପିଲାଟିକୁ ନେଇଯାଅ...... ଆରେ ବାପ୍‌ରେ ବାପ୍.....ପିଲାଟିର ଦେହତ ତାତିରେ ଖଇ ଫୁଟୁଛି। କେଉଁ ଅମଣିଷ ତାକୁ ଏଠି ଛାଡି ଚାଲିଗଲା କେଜାଣି। ପିମ୍ପୁଡି, ଜନ୍ଦା ପିଲାଟାକୁ ଖାଇଗଲେଣି।

(ପିଲାଟିକୁ କୋଳକୁ ଯାକିଧରି ଗୀତ ଗାଇ ଶୁଆଇ ଦେବାକୁ ଚେଷ୍ଟା କଲା)

ଛବି - ନାଇଁ ନାଇଁ....ୟାକୁ ଆଗ hospital ନେବାକୁ ପଡିବ ତାପରେ ଯେଉଁ କଥା........ (ଛବିର ପ୍ରସ୍ଥାନ)

(ଛାୟା ମୂର୍ତ୍ତିଟି ବାହାରକୁ ଆସିଲା। ଠାକୁରଙ୍କ ଉଦ୍ଦେଶ୍ୟରେ ଜୁହାର ହେଲା)

ଛାୟା - ଯେଉଁଠି ରହ ସୁଖରେ ରହ। ମୋତେ ତୁ କ୍ଷମା କରିଦେଲୋ ଝିଅ..... ୟାଛଡା ମୋର ଆଉ ବାଟ ନଥିଲା। ନହେଲେ ତୋ ସାଙ୍ଗରେ ମୋତେ ବି ସେମାନେ ମରଣ ମୁହଁକୁ ଠେଲି ଦେଇଥାନ୍ତେ। ଏ ସମାଜର ମାଆ ମାନେ ଯେପର୍ଯ୍ୟନ୍ତ ଝିଅ ମାନଙ୍କୁ ବୋଝ ବୋଲି ମାନିଚାଲିଥିବେ ସେପର୍ଯ୍ୟନ୍ତ ବୋହୁମାନଙ୍କ ଠାରୁ ଆରମ୍ଭ କରି କୁନିଝିଅ ମାନଙ୍କର ନିସ୍ତାର ନାହିଁ। ମୋତେ ଅଭିଶାପ ଦେଲୋ ମାଆ.... ମୁଁ ମାଆ ହୋଇବି ମାଆ ହୋଇ ପାରିଲିନାହିଁ (କାନ୍ଦି ଉଠିଲା) (ଅନ୍ଧାର)

## ୩ୟ ଦୃଶ୍ୟ

(ରାତି ବ୍ୟସ୍ତ, ବିବ୍ରତ ହୋଇ ବୁଲୁଛି। ଅଫିସ ଯିବାକୁ ବାହାରିଛି)

ରାତି - ସକାଳୁ ସକାଳୁ Morning walk କରିବାକୁ ଯାଇ କୁଆଡେ ଗଲା କେଜାଣି ? ତାକୁ କ'ଣ ସମୟ ଜଣାପଡୁନି ନା କ'ଣ ? ଅଫିସ ବେଳ ଆସି ହେଲାଣି। ଘରର ଚାବି ଟା ବି ନେଇନି। (ତାକୁ Phone କଲା / Phone ଟା Table ଉପରେ ବାଜିଲା) ଦେଖୁନ ତାକୁ, Phone ଟା ବି' ଏଇଠି ରଖି ଦେଇ ଯାଇଛି। ଏଇନେ ମୁଁ କ'ଣ କରିବି ଯେ? ଅଫିସ ଯିବି କେମିତି/ ଏତେ ଦାୟିତ୍ୱବାନ ପିଲା ଅଥଚ ସମୟ କ'ଣ ତାକୁ ଜଣା ପଡୁନି ନା କିଛି ଅସୁବିଧାରେ ପଡିଲା କେଜାଣି ? (ପଶି ଆସିଲା ଛବି, ଖୁବ୍ ବ୍ୟସ୍ତ ଥିଲା)

ଛବି - Sorry ରାତି, ମୋର ଡେରି ହୋଇଗଲା..... Please help me.

ରାତି - କ'ଣ ହେଲା ତୋର ? ଖୁବ୍ ବ୍ୟସ୍ତ ବିବ୍ରତ ଜଣା ପଡୁଛୁ।

ଛବି - ତୁଟିକିଏ ମୋର ଛୁଟି ଦରଖାସ୍ତଟା ନେଇ ଯା ଅଫିସ ରେ ଦେଇଦେବୁ। Please.

ରାତି - ତୋ ଦେହ ଖରାପ ନା କ'ଣ ?

ଛବି - ହଁ ଦେହ ଖରାପ କିନ୍ତୁ ମୋର ନୁହେଁ, ଝିଅର....

ରାତି - ଝିଅର...କାହାଝିଅର....

ଛବି - ମୋ ଝିଅର....ବାଟରୁ ପାଇଲି.......।

ରାତି - ବାଟରୁ ପାଇଲୁ......ଝିଅ....ତୋ ମୁଣ୍ଡ ଫୁଣ୍ଡ ଖରାପ ହୋଇ ଗଲାଣି ଦେଖୁଛି...... ହୋଇଲୋ ଚଣ୍ଡି...ବାଟରୁ ଲୋକେ ପର୍ସ, ମୋବାଇଲ...ପାଆନ୍ତି.....ତୁ କିନ୍ତୁ ପାଇଲୁ ଝିଅଟିଏ....କ'ଣ କଣ୍ଢେଇଟିଏ...... ?

ଛବି - କଣ୍ଢେଇ ନୁହଁ ଲୋ ରାତି ! କଣ୍ଢେଇ ଭଳି ଝିଅ ଟିଏ।

ରାତି - ବାଟ ଭୁଲି ପଳେଇ ଆସିଥିବ। ତା'ର ବାପା ମାଆ ତାକୁ ଖୋଜୁଥିବେ। କେଉଁଠି ତାକୁ ରଖିଛୁ। ତାକୁ ଶୀଘ୍ର ନେଇ Police station ରେ ଦେଇ ଦେ। ନହେଲେ ପିଲା ଚୋରି କେଶ୍‌ରେ ଫସିଯିବୁ ଜାଣିଥା।

ଛବି - ସେ ବାଟ ଭୁଲି ପଳେଇ ଆସିନି କି ତା'ବାପା ମାଆଙ୍କୁ ବି ଖୋଜୁନି ବରଂ ତା ବାପା ମାଆ ତାକୁ ଘରର ବାଟ ଭୁଲାଇବା ପାଇଁ ମନ୍ଦିର ବେଢାରେ ଫୋପାଡି ଦେଇ ପଳେଇ ଯାଇଛନ୍ତି। ବାକି ରହିଲା ପିଲା ଚୋରି କେଶ କଥା କିଏ କେଶ କରିବ? ସେ ବିଷୟରେ ତୁ ନିଶ୍ଚିନ୍ତ ରହ...(ଦରଖାସ୍ତ ଦେଲା) ଦେଇଦେବୁ ପଚାରିଲେ କହିବୁ ଦେହ ଭଲ ନାହିଁ।

ରାତି - କାହାର ତୋ ଝିଅର ?

ଛବି - ଆପାତତଃ ସେଇଆ। ଠାକୁରଙ୍କୁ ଡାକ ତା ଦେହ ଶୀଘ୍ର ଠିକ୍ ହୋଇଯାଉ।

ରାତି - ତୋ ଝିଅ କାହିଁ ଦେଖୁନିତ ?

ଛବି - Hospital ରେ Emergency ward ରେ। ତୁ ଅଫିସରୁ ଫେରି hospital ଆସିବୁ...ସେଇଠି କଥା ହେବା......।

ରାତି - (ଦରଖାସ୍ତ ଦେଖି) ତୁ କ'ଣ ୫ ଦିନ ଛୁଟୀ ନେଇଛୁ ?

ଛବି - ଦରକାର ପଡିଲେ ଲମ୍ବା ଛୁଟୀ ବି ନେଇପାରେ।

ରାତି - କ'ଣ Maternity leave?

ଛବି - ଅସମ୍ଭବ ନୁହେଁ....।

ରାତି - ମାଆ ନ ହୋଇ ବି। ମାଆ ହେବାର ପ୍ରୟାସ କରୁଛୁ ତା'ହେଲେ ?

ଛବି - ତପସ୍ୱିନୀ କାବ୍ୟର ସେଇ ପଦଟା ଆଜି ଭାରି ମନେ ପଡୁଛି। "ନିରେଖିବା ଆଗରୁ ତନୟ ମୁଖ, ଲଭିବୁ ତନୟର ପାଳନ ସୁଖ"। ବୋଧହୁଏ କବିଙ୍କର ସେଇ ଉକ୍ତି ଆଜି ମୋ ପାଇଁ କାବ୍ୟ ସତ୍ୟ ନ ହୋଇ ଜୀବନ ସତ୍ୟ ପାଲଟି ଯାଇଛି।

ରାତି - ମୋତେ ଯାହା ଲାଗୁଛି। ତୁ ଏଇ ଅଳ୍ପ ଦିନ ଭିତରେ ପାଗଳା ଗାରଦ କୁ ଯିବାର ଆୟୋଜନ କରୁଛୁ।

ଛବି - ତା'ମାନେ ତୁ କହିବାକୁ ଚାହୁଁଛୁ ଯେ ମୁଁ ସେ କୁନି ଝିଅ ଟିକୁ ସେଇଠି ଛାଡିଦେଇ ଦେଖି ନ ଦେଖିଲାଭଳି ପଳେଇ ଆସିଥାନ୍ତି ?

ରାତି - ନା ନା ବରଂ ମୁଁ ହୋଇଥିଲେ ତାକୁ ନେଇ Police station ରେ ଜମା କରିଦେଇ ଆସିଥାନ୍ତି।

ଛବି - ତୋ ନାଗରିକ କର୍ତ୍ତବ୍ୟ ପାଳନ କରିଦେଇ ଥାଆନ୍ତୁ।

ରାତି - ହଁ ଠିକ୍ ସେଇଆ।

ଛବି - ମୁଁ କିନ୍ତୁ ସେ କଥା କରି ପାରିଲି ନାହିଁ। ସେମିତି କରିଥିଲେ ମୋ ଭିତରର ମଣିଷଟା ସାରାଜୀବନ ମୋତେ ସେଇ ଗୋଟିଏ ପ୍ରଶ୍ନ ପଚାରିଥାନ୍ତା । ଆଉ ମୋ ମାତୃତ୍ୱ କେବେ ବି ସେ ପ୍ରଶ୍ନର ଉତ୍ତର ଦେଇ ପାରି ନଥାନ୍ତା।

ରାତି - ତୋର ଉଦ୍ଦେଶ୍ୟ ହୁଏତ ମହତ ହୋଇପାରେ। କିନ୍ତୁ ଆମର ଏ ସମାଜକୁ ତୁ ଭଲ କରି ଜାଣିଛୁ, ଭଲ କରି ଚିହ୍ନିଛୁ। ସେମାନେ ତୋର ଏଇ ମାତୃତ୍ୱକୁ କେବେବି ସ୍ୱୀକୃତି ଦେବେ ନାହିଁ। କି ସେ ଝିଅର ମାତୃତ୍ୱର ଅଧିକାର କେବେ ବି ତୋତେ ମିଳିବ ନାହିଁ ଜାଣିଥା....।

ଛବି - ମାତୃତ୍ୱର ଅଧିକାର ମିଳୁକି ନମିଳୁ। ସେଥିପାଇଁ ମୁଁ ଖାତିର କରିନି ମାତ୍ର କଣ୍ଠିନ କାଳେ ମୁଁ ମୋ ବିବେକର ଆହ୍ୱାନକୁ ଏଡେଇ ଯାଇ ପାରିବନି । ତେଣିକି ଯାହାହେବ ଦେଖାଯିବ। ଏବେ ମୁଁ hospital ଯାଉଛି। ଟଙ୍କା ଦରକାର ହେଲେ ତୋତେ Phone କରିବି.... Bye.... (ପ୍ରସ୍ଥାନ)

ରାତି - ଆଜିକାଲି ଯୁଗରେ ଏତେ Imotinal ହେବାଟା ବୋଧ ହୁଏ ମୁର୍ଖତା ଛଡା ଆଉ କିଛି ନୁହେଁ...(ପ୍ରସ୍ଥାନ)

(ଅନ୍ଧାର)

## ୪ର୍ଥ ଦୃଶ୍ୟ

(ଆଲୋକ ଆସିଲାବେଳକୁ ନେପଥ୍ୟରୁ ପିଲା କାନ୍ଦଣାର ସ୍ୱର ଶୁଣାଗଲା। ତରତର ହୋଇ ରୋଷେଇ ଘରୁ ହାତରେ କ୍ଷୀର ବୋତଲ ଧରି ଛବି ବାହାରି ଆସିଲା)

ଛବି - ରାତି ! Gas ରେ ଭାତ ବସିଛି। ଦେଖିବୁ ନହେଲେ ଉତୁରିଯିବ। ମୁଁ ଟିକିଏ ଝିଅକୁ କ୍ଷୀର ପିଆଇ ଶୁଆଇଦେଇ ଆସୁଛି। (ଭିତରକୁ ଗଲା)

ରାତି - ଏ ଘରକୁ ତୋ ଝିଅ ଆସିଲା ଦିନରୁ ମୁଁ ଦେଖୁଛି ଯେ ତୋର ଆଉ କେଉଁ କଥାରେ ମନ ନାହିଁ। ତା'ରି ସେବା ଯେମିତି ତୋର ଏକମାତ୍ର କାମ। ନିଜର ଖାଇବା ପିନ୍ଧିବା କଥା ଛାଡ଼, ଅଫିସ କାମ ବି' ଠିକ୍ ଭାବେ କରୁଛୁକି ନାହିଁ ସନ୍ଦେହ। ତା'ଉପରେ ତୋର ଏତେଟା ଆସକ୍ତି ଆଦୌ ଭଲ ନୁହେଁ।

ଛବି - (ଗୀତ ଗାଇ ଝଅକୁ ଶୁଆଇ ଦେଉଥିଲା) ପିଲାର ଯତ୍ନନେବା ମାଆର ଆସକ୍ତି ନୁହେଁ, ବରଂ ତା'ର କର୍ତ୍ତବ୍ୟ, ଆବେଗ, ଆଉ ଉତ୍ସାହ। ସେଥିରେ ମାଆକୁ ଯେଉଁ "ପରମ ଆନନ୍ଦ ଆଉ ତୃପ୍ତି ମିଳେ ସେ କଥା ମାଆ ନ ହେବାଯାଏ ତୁ ବୁଝିପାରିବୁ ନାହିଁ।

ରାତି - କିନ୍ତୁ ତୁ ତ ତା'ର ଜନ୍ମକଲା ମାଆ ନୁହଁ। ତୁ ବୁଝିଲୁ କେମିତି ?

ଛବି - ନିଜେ ଜନ୍ମ ନକରି ନାରୀ କ'ଣ ମାଆ ହୋଇ ପାରେନା। ସେ କଥା ତୁ ମୋତେ ନୁହେଁ ଯଶୋଦା ମାତାଙ୍କୁ ପଚାର....ରାଧା ମାଆଙ୍କୁ ପଚାର। କହ୍ନେଇ ଆଉ କର୍ଣ୍ଣଙ୍କୁ ସେମାନେ କେମିତି ପାଳିଥିଲେ ? ତାଙ୍କରି ମୁହଁରୁ ଶୁଣିବୁ। ମୁଁ ସେମିତି ଜଣେ ମାଆ ହେବାର ପ୍ରୟାସ କରୁଛି ମାତ୍ର। ଖାଲି ଡର ଏତିକି ଯେ ଝିଅକୁ ବଡ କରି ମଣିଷ କରି ନ ପାରିଲେ ମୋର ଏଇ କୁମାରୀ ମାତୃତ୍ୱ ଉପରେ ଅନେକ ପ୍ରଶ୍ନବାଚୀ ତିଆରି ହୋଇ ଯିବ। (ରୋଷେଇ ଘରକୁ ଗଲା)

ରାତି - ସେଇ ଶୃଙ୍ଖଳା ମାତୃତ୍ୱ ପଛରେ ଧାଇଁ ଧାଇଁ ତୋ ନିଜର Career, ବାହାଘର, ତୋର ସଂସାର, ଯେମିତି ଏଇ ମରିଚିକା ପଛରେ ଧାଇଁ ଧାଇଁ ବାଟ ହୁଡି ନଯାଏ। (ଝିଅ କାନ୍ଦିଲା)

ଛବି - ରାତି ଗଲୁ ଗଲୁ ତାକୁ ଟିକିଏ କୋଳରେ ଧରି ବୁଲେଇଦେଲୁ । ନାନା ବାୟା ଗୀତ ଗାଇଦେଲୁ । ସେ ଶୋଇ ପଡିବ। ମୁଁ ଭାତଟା ଗାଳି ଦେଇ ସାରେ ତା'ପରେ ତାକୁ ନେବି।

ରାତି - ନା ବାବା ନା। ସେ ମୋ ଉପରେ କେତେ ଥର ସି ସି କରି ଦେଲାଣି। ମୁଁ office ବାହାରିଛି ପରା, ମୋ ଲୁଗା କାଳେ ଖରାପ କରିଦେବ। ମୋ ଉପରେ ଯେମିତି ତା'ର ଭାରି ବାଦ। ମୁଁ ତାକୁ ଏବେ ନେଇ ପାରିବିନି।

ଛବି - ପିଲାର ମଇଳାକୁ ଏତେ ଡରୁଛୁ। ନିଜେ ପିଲାର ମାଆହେଲେ କ'ଣ କରିବୁ ଶୁଣେ ?

ରାତି - ସେତେବେଳକୁ ଦେଖାଯିବ-ନହେଲେ ଜଣେ ଆୟା ରଖିଦେବି।

ଛବି - ହଉ ହଉ, ମୁଁ ବି ଦେଖିବି ଯେ କେମିତି ଆୟାରଖିବୁ ନା ରଙ୍କୁଣୀ ଭଳି ଛାତିରେ ଜାକି ବୋକ ପରେ ବୋକ ଦେଇ ଚାଲିଥିବୁ। ହଉ ହଉ ଯାଆ ତାକୁ ନଧରିଲୁ ନାହିଁ। ଦୋଳିରେ ଝୁଲେଇ ନାନାବାୟାଗୀତ ଟିକିଏ ଗାଇଦେବୁ ଯାଆ।

ରାତି - ସେ ଗୀତ ଗୁଡା କ'ଣ ଆଉ ମନେ ଅଛି। ପିଲାଦିନର Ryme ଗୁଡା ବି ପାଶୋରି ଗଲିଣି। କହିବୁ ଯଦି ସିନେମାଗୀତ ଦି'ପଦ ଗାଇଦେବି।

ଛବି - ହଉ ହେଲା ସେଇଆକର। ଜଲଦି ଯାଆ ପିଲାଟା ରାହା ପଡିଗଲାଣି। (ରାତିର ପ୍ରସ୍ଥାନ ଭିତରୁ ହିନ୍ଦୀ/ ଓଡିଆଗୀତ ଶୁଭିଲା) ଟିକିଏ ଭଲ କରି ଗାଆ। ପିଲାଟା ଯେମିତି ଶୋଇପଡିବ।

ରାତି - (ବାହାରକୁ ଆସି) ଓ ହୋ କେମିତି ଏ ପିଲାଟାକୁ ସମ୍ଭାଳିଛୁ କେଜାଣି? ସବୁବେଳେ ଖାଲି ରା ରା ହେଉଛି।

ଛବି - ଏବେ ତୁ ବୁଝି ପାରିବୁ ନି। ନିଜେ ମାଆ ହେଲେ ବୁଝିବୁ। ସେମିତି ସେମିତି ହୋଇ ୯ ମାସ ବିତି ଗଲାଣି। ଈଶ୍ୱର ଚାହିଁଲେ ସାରା ଜୀବନ ତା'ରି ସେବା କରି କରି ମୋ ଦିନ ବିତିଯିବ।

ରାତି - ମୁଁ ଜାଣେ ଯେ ମାଆର ଛାତିରେ ମୁହଁ ଜାକି ଦେଲେ ପିଲାମାନଙ୍କ ରାହା ଆପେ ବନ୍ଦ ହୋଇଯାଏ। କାରଣ ମାଆର ଛାତିରେ ସେ ଅମୃତର ଧାରା ପ୍ରକୃତି ଦେଇଛି। ହେଲେ ସେ ଅମୃତ ଧାରାର ଅଧିକାରୀ ତୁ ହୋଇନୁକି କେବେବି ହୋଇ ପାରିବୁନି କାରଣ ସେଥିପାଇଁ ମାଆକୁ ଗର୍ଭଧାରଣ କରିବା ଭଳି ଯନ୍ତ୍ରଣା ସହିବାକୁ ପଡେ।

ଛବି - ସେ କଥା ମୁଁ ଜାଣେ। କିନ୍ତୁ ସେଥିପାଇଁ ତୋ ଭାଷାରେ ଏଇ ଅବାଞ୍ଛିତ ମାତୃତ୍ୱକୁ ମୁଁ ବିଜର୍ସନ ଦେଇ ପାରିବି ନାହିଁ। ମୋ ପାଇଁ ମାତୃତ୍ୱ ଯେମିତି ଆସୁଛି ଆସୁ । ତାକୁ ମୁଁ ଈଶ୍ୱରଙ୍କ ଦାନ ଭାବି ଗ୍ରହଣ କରିନେଇଛି। ସେଥିରେ କ୍ଷତି କ'ଣ?

ରାତି - ଯାହା ହେଲେବି' ମାଆର କାଆ ସାଜି ବଂଚିବା ଆଉ ନିଜେ ମାଆ ହେବା ଭିତରେ କ'ଣ କିଛି ତଫାତ୍ ନାହିଁ ବୋଲି ଭାବୁଛୁ?

ଛବି - ହଁ Biological differnce ତ ଯଥେଷ୍ଟ ଥାଇପାରେ କିନ୍ତୁ ମାନସିକଭାବେ ସେ ଦୁଇଟି ମାତୃତ୍ୱ ଭିତରେ ସେମିତି କିଛି ଦୂରତ୍ୱ ଥିବାର ତ ମୁଁ ଉପଲବ୍ଧି କରିପାରୁନାହିଁ।

ରାତି - ସତରେ ତୁ ପାଗଳ ହୋଇଯାଇଛୁ। ନହେଲେ ସାରା ଜୀବନ ଏମିତି ଗୋଟିଏ ଆବାଞ୍ଛିତ ପିଲାର ମାଆ ହୋଇ ବଂଚିବାର ସିଦ୍ଧାନ୍ତ କ'ଣ ନିଅନ୍ତୁ?

ଛବି - ବୋଧ ହୁଏ ଏହାହିଁ, ଈଶ୍ୱରଙ୍କ ଇଛା।

ରାତି - ଆଉ ତୋ ଇଛା କ'ଣ କହତ?

ଛବି - ମୋର ପୁଣି ଇଛା କ'ଣ? ତବ ଇଛା ପୂର୍ଣ୍ଣ ସଦା ହେଉ ଭଗବାନ। ଜଗନ୍ନାଥଙ୍କ ଇଛା ହିଁ ମୋର ଇଛା।

ରାତି - ଏବେ ବି ସମୟ ଅଛି। ତୁ ତୋ ଇଛାର ପରିବର୍ତ୍ତନ କରି ପାରିବୁ। ତୋର ଯଦି ଆଗ୍ରହ ଥାଏ ତା'ହେଲେ ମୁଁ ମୋ ଭାଇ ସାଙ୍ଗରେ ତୋର ବାହାଘର ପ୍ରସ୍ତାବ ପକାଇବି।

ଛବି - ତୋର ମନ କ'ଣ କହୁଛି କହିଲୁ। ମୁଁ ଏଇ ଅନାଥପିଲାକୁ ପୁଣି ନେଇ ରାସ୍ତାକଡରେ ଫିଙ୍ଗି ଦେଇ ଆସିବି।

ରାତି - ଆରେ ନା ନା- ସେ କଥା ମୁଁ କହୁନି। ତୁ ଚାହିଁଲେ ୟାକୁ ନେଇ ଅନାଥାଶ୍ରମରେ ଛାଡିଦେଇ ପାରିବୁ କିମ୍ବା Police ରେ ଦେଇ ଦେଇ ପାରିବୁ।

ଛବି - ମୋର ଅନ୍ତରାତ୍ମା କିନ୍ତୁ ସେଥିରେ ଏକମତ ହୋଇ ପାରୁନି।

ରାତି - ତା'ହେଲେ କ'ଣ ଏଇ ଅନାଥ ପିଲାଟା ପାଇଁ ସାରା ଜୀବନ ତୁ ଅବିବାହିତ ରହିବୁ ବୋଲି ଠିକ୍ କରିଛୁ? ହିତେଶ ବାବୁଙ୍କୁ କି ଉତ୍ତର ଦେବୁ?

ଛବି - (ଗମ୍ଭୀର ଓ ନୀରବ)

ରାତି - ଚୁପ୍ ରହିଲୁ ଯେ-ଉତ୍ତର ଦେ......।

ଛବି - କ'ଣ ବା ତୋତେ କହିବି? ମୋ ନିରବତା ହିଁ ମୋର ଉତ୍ତର ଆଉ ତାକୁ ବୁଝିବାର ବୟସ ତୋର ଯଥେଷ୍ଟ ହୋଇଛି।

ରାତି - ସେ କ'ଣ ତୋ ସହିତ କିଛି ସମ୍ପର୍କ ରଖି ନାହାଁନ୍ତି ? Phone କରିନାହାଁନ୍ତି ?

ଛବି - ନା....

ରାତି - ତା'ହେଲେ ତୁ ତାଙ୍କୁ Phone କରୁନୁ ?

ଛବି - ଉଡିଯାଇଥିବା ଗେଣ୍ଡାଳିଆ ପରକୁ ଗୋଟେଇ ଆଣି ସ୍ମୃତିଭାବି ସାଇତି ରଖି ହୁଏ। ତାକୁ ସାଥୀ କରି ହୁଏନା। ମରିଚିକା ପଛରେ ଧାଇଁବା ଅପେକ୍ଷା ମରୁ ଝରଣାରୁ ପାଣି ଆଞ୍ଜୁଳାଏ ପିଇ ଜୀବନ ବଂଚାଇବାରେ ଅଧିକ ଶାନ୍ତି ଅଛି, ଆନନ୍ଦ ଅଛି।

ରାତି - ବଡହେଲେ ସେଇପିଲା ଦିନେ ତୋ ବସାଛାଡି ଉଡିଯିବ। ଜାଣୁତ ? କାଉ ବସାରେ କୋଇଲି କେତେ ଦିନ ବା ରହିବ ?

ଛବି - ଡେଣା ଲାଗିଲେ ଖାଲି କୋଇଲି ନୁହେଁରେ କାଉର ଛୁଆ ବି ମାଆକୁ ଛାଡି ଉଡିଯାଏ। ପିଲା ଦିନେ ବଡହେଲେ ମାଆର ଆଙ୍ଗୁଳି ଛାଡି ଦୂରକୁ ଚାଲିଯିବ ବୋଲି ମାଆମାନେ କ'ଣ ସନ୍ତାନ ଜନ୍ମ କରିବା ଛାଡିଦେବେନା ତାକୁ ମଣିଷ କରିବାକୁ ଭୁଲିଯିବେ।

ରାତି - ତୁ ତା'ହେଲେ ବାହା ହେବୁନି ?

ଛବି - ବାହା ହେବାର ଆବଶ୍ୟକତା ଯଦି ସନ୍ତାନ ସୁଖ ହୁଏ ତା'ହେଲେ ସେ ସୁଖ ତ ମୋତେ ମିଳିସାରିଛି।

ରାତି - ଆଉ ଜୀବନସାଥୀ... ?

ଛବି - ଅବିଶ୍ୱସ୍ତ ଜୀବନ ସାଥିକୁ ନେଇ ସାରା ଜୀବନ ଦ୍ୱନ୍ଦ୍ୱ ଆଉ ମନସ୍ତାପ ଭିତରେ ଜୀବନ ବଂଚିବା ଅପେକ୍ଷା ଏଇଭଳି ନିଷ୍ପାପ, ସରଳ ସହଯାତ୍ରୀର ବିଶ୍ୱସ୍ତ କୁନି ଆଙ୍ଗୁଳି ଧରି ବାଟ ଚାଲିବାକୁ ମୁଁ ଅଧିକ ସୁରକ୍ଷିତ ମନେକରିବି। ତୁ ଆଉ ମୋତେ ମୋ ସିଦ୍ଧାନ୍ତରୁ ଦୁରେଇ ଯିବାକୁ କହନା। ବରଂ ମୋତେ ସାହସ ଦେ.....। ଉତ୍ସାହ ଦେ....।

ରାତି - ଈଶ୍ୱର କରନ୍ତୁ ତୁ ସୁଖୀଥାଆ। ତଥାପି ଜୀବନର ଚଲାବାଟରେ କେତେବେଳେ ଯଦି ନିଜକୁ ଏକା ଏକା ମନେକରୁ ମୋତେ ମନେ ପକେଇବୁ ତୋ ହାତ ଧରିବାକୁ ମୁଁ ନିଶ୍ଚୟ ଆସିବି। ତୋ ଭଳି ବଂଧୁକୁ ମୁଁ କେବେବି ଭୁଲିପାରିବିନି - ତୁ ମୋର ରକ୍ତର ସମ୍ପର୍କଠୁଁବି ଅଧିକ ନିଜର।

ଛବି - ରକ୍ତର D.N.A Test କଲେ ସେଥିରୁ କେବଳ ଜିନ୍‌ର ଠିକଣା ମିଳେ କିନ୍ତୁ କିଏ ବିଶ୍ୱାସୀ କିଏ ଧୋକାବାଜ୍ ତା'ର ଠିକଣା ମିଳେନା। ପରକୁ ଆପଣାର କରିବାର କଳା, ଜୀବନ ହିଁ ଶିଖାଏ।ତେବେ ସେଇ ଜୀବନକୁ ନେଇ ପ୍ରତ୍ୟେକ ମଣିଷର ଅନୁଭୂତି ଭିନ୍ନଭିନ୍ନ । ଆପଣା ଜୀବନର ଆବଶ୍ୟକ ତାକୁ ବୁଝୁବୁଝୁ ଜୀବନ ସରିଯାଏ। ବାକି ରହିଯାଏ ଅନେକ ଆଶା, ଅନେକ ସ୍ୱପ୍ନ.... (Bell ବାଜିଲା) କିଏ ଆସିଲା ଦେଖତ...(ରାତି କବାଟ ଖୋଲିଲା ଭିତରକୁ ଆସିଲା ପ୍ରକାଶ....। କିଏ ପ୍ରକାଶବାବୁ ଏତେ ରାତିରେ ହଠାତ୍ ରାତି ପାଖରେ କିଛି କାମ ପଡିଲା ନା କ'ଣ ?

ପ୍ରକାଶ - ନା ନା କାମଟା ଆପଣଙ୍କ ପାଖରେ। (Invitation Card ବାହାର କରି) ନିଅନ୍ତୁ ନିମନ୍ତ୍ରଣ ପତ୍ର। ମୋ ବାହାଘର ନିଶ୍ଚୟ ଆସିବେ। (ରାତି ହସୁଥିଲା) (card ପଢି)

ଛବି - (ହସିଲେ) କ'ଣ କହିଲେ ? ନା ନା ବାକ୍ୟ ସଂଶୋଧନ କରନ୍ତୁ।

ରାତି - ହଉହେଲା ମୁଁ କହିଦେଉଛି.... ଆମ ବାହାଘର। ତୁ ନିଶ୍ଚୟ ଆସିବୁ।

ଛବି - ମୁଁ ଏକା ଯିବିନି। ମୋ ସାଙ୍ଗରେ ମୋ ଝିଅବି ଯିବ ରାଜିତ? (ପ୍ରକାଶ ଥଥମମ ହେଲା)

ରାତି - ନା ନା ତୁ ତୋ ଝିଅକୁ ନେଇ ସେଠିକି ଆସିବୁନି। Please....!

ଛବି - କାହିଁକି ?

ପ୍ରକାଶ - କିଏ କେତେ ପ୍ରକାରର ପ୍ରଶ୍ନ ପ୍ରଚ୍ଚରିବେ। କାହାକୁ ତୁ କ'ଣ ଉତ୍ତର ଦେବୁ କହତ?

ଛବି - ମୋ ଉତ୍ତର ପାଇଁ ଚିନ୍ତା କରନା... ଅବଶ୍ୟ ତୋ ପାଇଁ ଅସୁବିଧା ହୋଇପାରେ। ତା'ହେଲେ ଝିଅକୁ କ'ଣ କରିବି ?

ରାତି - ତା'ହେଲେ ତୁ କ'ଣ ଯିବୁନି ?

ଛବି - (କ'ଣ ଭାବି) ନିଶ୍ଚୟ ଯିବି.... କ'ଣ ଗୋଟିଏ ବ୍ୟବସ୍ଥା ହୋଇଯିବ ତୁ ଚିନ୍ତା କରନା- All the Best to both of you. ପ୍ରକାଶବାବୁ ବସନ୍ତୁ ମୁହଁ ମିଠା କରିଯିବେ।

ପ୍ରକାଶ - ନା ନା ଆହୁରି ଅନେକ Card ବାଣ୍ଟିବାକୁ ଅଛି। ବାହାଘରରେ ଏଇ Card ବାଣ୍ଟିବାଟା ସବୁଠୁଁ ଗୁରୁତ୍ୱ ପୂର୍ଣ୍ଣ ଓ କଷ୍ଟକର କାମ...

ଛବି - କଷ୍ଟ କଲେ ସିନା କୃଷ୍ଣ ପାଇବ...

ପ୍ରକାଶ - କୃଷ୍ଣ ନୁହଁ ରାଧା..... (ସମସ୍ତେ ହସିଲେ) ଆଚ୍ଛା ମୁଁ ଆସୁଛି। (ପ୍ରସ୍ଥାନ) (ଛବି ରାତିର କାନ ଧରିଛି)

ଛବି - ତୁ ତ ଭଲ ବୁଡିବୁଡି ପାଣିପିଇ ଜାଣିଛୁ? ତୋ ବାହାଘର date ଟା ମୋତେ ଲୁଚେଇ ଥିଲୁ କାହିଁକି ?

ରାତି - Surprise ଦେବି ବୋଲି। କେମିତି ଲାଗିଲା।

ଛବି - ଚମତ୍କାର। ବାହାଘର କେବେ.... ?

ରାତି - ଏଇନେ କାର୍ଡ ପଢ଼ିଲୁପରା ? ୧୫ ଦିନ ପରେ....

ଛବି - ବାହାଘର ପରେ ଏଇଠି ରହିବୁ ନା ପ୍ରକାଶବାବୁଙ୍କ ପାଖରେ।

ରାତି - ଘରଖଣ୍ଡିଏ ପାଇବା ପର୍ଯ୍ୟନ୍ତ ଏଇଠି ରହିବି। ତୁ ବି ଛୋଟ ଘର ଖଣ୍ଡେ ଦେଖୁନୁ। ଏତେ ବଡ ଘରେ ତୋତେ ଅସୁବିଧା ହେବନି ?

ଛବି - ଦେଖିବି...ସେକଥା ଛାଡ଼। ଏବେ ତୋ କଥା କହ। May God bless you. ଆନନ୍ଦରେ ଘର ସଂସାର କର ଜୀବନର ଏଇ ଛକରୁ ତା ହେଲେ ଆଉ ଜଣେ ଘନିଷ୍ଠ ବଂଧୁ ମୋ ହାତ ଛାଡି ଚାଲିଯିବ। ଏଇ ଛକରୁ ଆମର ଯାତ୍ରା ପଥ ଭିନ୍ନ ମୋଡ଼ ନେବାକୁ ଯାଉଛି। ତୁ ଜଣେ ନୂଆ ସାଥିର ହାତଧରି ବାଟ ଚାଲିବୁ। ଆଉ ମୁଁ ବି ନୂଆ ବଂଧୁଟିଏ ପାଇଛି। ଏ ପର୍ଯ୍ୟନ୍ତ ସେ ମୋ ହାତ ଧରି ବାଟଚାଲି ଶିଖିନି। ଆଶା ରଖିଛି ତା'ରି ହାତ ଧରି ହସିଖେଳି ବାକି ଜୀବନ ବିତେଇ ଦେବି- (ଆଖିରେ ଲୁହ)

ରାତି - ପୁଣି ତୋ ଆଖିରେ ଲୁହ......।

ଛବି - ଆନନ୍ଦର ଲୁହ। ବଂଧୁର ସୁଖରେ ମନ ଭରି ଯାଉଛି। କବି ପରା କହିଛନ୍ତି "ପର ପ୍ରେମ ଦେଖି ନିଜପ୍ରେମ ସଦା ହୋଇଥାଏ, ଆନ୍ଦୋଳିତ"। ଏହାକୁ ତ ଭଲପାଇବା କହନ୍ତି। ବଂଧୁତ୍ୱ କହନ୍ତି।

ରାତି - ଆଉ ହିତେଶ ବାବୁଙ୍କ ସହିତ ବଂଧୁତ୍ୱ କଥା କ'ଣ ଭାବୁଛୁ ?

ଛବି - କୁହୁଡିର ହାତ ଧରିବା ଆଗରୁ ଆକାଶରେ ସୂର୍ଯ୍ୟ ଉଠିବା ପର୍ଯ୍ୟନ୍ତ ଅପେକ୍ଷା କରିବା ଉଚିତ। ପୁଣି ଏମିତି ହାତ ନ ଧରିବା ଉଚିତ ଯାହାର କୌଣସି ନିଜସ୍ୱ ଅସ୍ତିତ୍ୱ ନଥିବ....ନୁହେଁ (ଝିଅ କାନ୍ଦିଲା)

ରାତି- ଯା-ତାକୁ ସମ୍ଭାଳ ମୁଁ Dress ବଦଳାଇ ଆସୁଛି ଖାଇବା- (ପ୍ରସ୍ଥାନ)

**(ଅନ୍ଧାର)**

## (୧୦ ବର୍ଷ ପରେ)

## ୫ମ ଦୃଶ୍ୟ

(ଝିଅ ପରୀ ଖାତାଧରି ପଢୁଛି । ଛବି ତା'ର ମୁଣ୍ଡ କୁଣ୍ଡେଇ ଫିତା ବାନ୍ଧି ଦେଉଛି) ।

ଛବି - ଓ ହୋ, ଟିକିଏ ଥିର ହୁଅ ଭଲା ! ପାଠତ ପଢୁଛୁ, ଏମିତି ଏଣ୍ଡୁଅ ଭଳିଆ ମୁଣ୍ଡଟାକୁ ଏତେ ଟୁଙ୍ଗାରି ହେଉଛୁ କାହିଁକି ? ରହ ଟିକିଏ ମୁଁ ବେଣୀ ପକେଇ ମୁଣ୍ଡରେ ଫିତା ବାନ୍ଧି ଦିଏ ।

ପରୀ - ଆଜିପରା ବକ୍ତୃତା ପ୍ରତିଯୋଗୀତା ଅଛି । ମୁଁ ଟିକିଏ Point ଗୁଡାକ ଦେଖି ନେଉଛି । ଏତିକି ବେଳେ ତୋର ମୁଣ୍ଡ ବନ୍ଧା କଥା ମନେ ପଡିଗଲା । ଶୁଣ ମୋ ମୁଣ୍ଡରେ ତୁ ନାଲିଫିତା ବାନ୍ଧିବୁ ନାହିଁ । ସାଙ୍ଗମାନେ ମୋତେ ଚିଡାଉଛନ୍ତି । ମଫ, ଗାଉଁଲି କହୁଛନ୍ତି ବୁଝିଲୁ ।

ଛବି - ତା'ହେଲେ କ'ଣ Green ଫିତା ବାନ୍ଧି ଦେବି ?

ପରୀ - ମୁଁ କ'ଣ ଜାତୀୟ ପତାକା । ନାଲୀନେଳୀ କରି ଉଡେଇ ଦେବୁ, ଫିତା ବାନ୍ଧିବା ଦରକାର ନାହିଁ । ସେମିତି cleap ଲଗାଇଦେ । ନହେଲେ ଖୋଲା ଛାଡିଦେ ।

ଛବି - ତାପରେ ଦିନସାରା ଡିଆଁ ଡେଇଁ କରି ସଞ୍ଜବେଳକୁ କାଳିମାତା ହୋଇ ଘରକୁ ଫେରିବୁ ନୁହେଁ ?

ପରୀ - ତେବେ ତୋ ଇଚ୍ଛା ଯାହା ହେଉଛି କର ପଛେ ହେଲେ ମୋ ମୁଣ୍ଡଟାକୁ କ୍ରୀକେଟ ପିଚଭଳିଆ ଚିତା ପଟା କରିବୁ ନାହିଁ, କି ନାଲି ନେଳୀ ଫିତା ବାନ୍ଧି ଝଣ୍ଡା ଉଡେଇବୁ ନାହିଁ ଜାଣିଥା ।

ଛବି - Competition ଅଛି ପରା ? ମୁଣ୍ଡଟା ଟିକିଏ ସୁନ୍ଦର ଦେଖାଯିବ ନା ନାହିଁ ?

ପରୀ - ସେଠି ମୁଣ୍ଡ ବନ୍ଧା Competition ହେଉନି । Debate Competition ହେଉଛି । ଭଲ କହିଲେ ଯାଇ Prize ମିଳିବ ବୁଝିଲୁ ।

ଛବି - ତୋ ସାଙ୍ଗରେ ଯୁକ୍ତି ତର୍କ କରି କିଏ ପାରିବ କହିଲୁ ? ଯାଆ ଶୀଘ୍ର ପଢାପଢି ସାରି Ready ହୋଇଯା- । ଆଜି ଏକା ସାଙ୍ଗରେ ବାହାରିଯିବା ।

ପରୀ - କାହିଁକି ଆଜି School Bus ରେ ଯିବିନି କି ?

ଛବି - ନା- ଆଜି ମୁଁ ତୋତେ ନେଇ ସ୍କୁଲରେ ଛାଡିବି ।

ରିମି - ଓ..... ବୁଝିଗଲି । ଆଜି Competition ଅଛିପରା ତେଣୁ ଆଗ ମନ୍ଦିର ଯିବା । ସେଠି ଠାକୁରଙ୍କୁ ମୁଣ୍ଡିଆ ମାରି ତା'ପରେ School ଯିବା । କ'ଣ ସତ ନା ମିଛ..... ?

ଛବି - ମୋ ଝିଅ କେତେ ସିଆଣା ହୋଇଗଲାଣି......

ପରୀ - ଆଚ୍ଛା ମାଆ ତୁ ମନ୍ଦିର ଯାଇ ଠାକୁରଙ୍କୁ ଯାହାସବୁ ମାଗିବୁ ବୋଲି ଭାବୁଛୁ । ଆମ ଠାକୁର ଘରେ ବସି ସେସବୁ ମାଗିଦେଲେ ଚଳନ୍ତା ନାହିଁ ।

ଛବି - ନା ନା ସେମିତି କେମିତି ହେବ ?

ପରୀ - ତା'ହେଲେ ଘରେ ଖଟୁଲିରେ ଏତେ ସବୁ ଠାକୁର ରଖିଛୁ କାହିଁକି ? ମୁଁ ତ ଭାବୁଛି ଖଟୁଲିରେ ରଖିଥିବା ସବୁଠାକୁରଙ୍କ ନାଁ ବି ତୁ ଠିକ୍‌ରେ ଜାଣିନଥିବୁ ।

ଛବି - ଚୁପ୍ ସେମିତି କହନ୍ତି ନାହିଁ । ଠାକୁର ରାଗିବେ ।

ପରୀ - ଠାକୁର ରାଗନ୍ତୁ କି ନ ରାଗନ୍ତୁ । ତୁ ନିଶ୍ଚୟ ରାଗିବୁ ନୁହେଁ ?

ଛବି - ହଁ ମୁଁ ରାଗିବି । ଶୀଘ୍ର ପଢାପଢି ସାରି ବହିପତ୍ର ସଜାଡି ବାହାରି ପଡ ନହେଲେ ଡେ଼ରି ହୋଇଯିବ ।

ପରୀ - ବହିପତ୍ର ସଜାଡ଼ି ଦେଇଛି, ଖାଇ ସାରିଲେ Uniform ପିନ୍ଧି ବାହାରିବି। (ଉଠି ଭିତରକୁ ଚାଲିଗଲା)

ଛବି - ହେ ପ୍ରଭୁ- ପିଲାଟାର ଦୋଷ ଧରିବ ନାହିଁ। ଭଲ ପାଠ ଦି'ଅକ୍ଷର ପଢୁଛି ବୋଲି ସମସ୍ତଙ୍କର ତା'ଉପରେ ଆଖି। ତା'କୁ କ୍ଷମା କରିଦିଅ ପ୍ରଭୁ...।

(ଅନ୍ଧାର)

## ୬ଷ୍ଠ ଦୃଶ୍ୟ

(ଛବି ତର ତର ହୋଇ ଘର ଓଳାଉଛି। ସମୟ ସନ୍ଧ୍ୟା)।

ଛବି - ୫ଟା ବାଜିଲାଣି-ଏଇନେ ସ୍କୁଲରୁ ଆସି ପହଞ୍ଚିଯିବ ଯେ ଖାଇବା ପାଇଁ ବ୍ୟସ୍ତ ହୋଇ ପଡ଼ିବ - ମୋର ଏଣେ କାମ ସରୁନି। ଯାଏ ଚକୁଳି ଦି ଟା ବନେଇ ଦିଏ.....ପରୀ ଆସିଲେ ଗରମ ଗରମ ଖାଇବ..... (ଝାଡୁ ରଖି ଯିବାକୁ ବାହାରିଛି Bell ବାଜିଲା) କହୁ କହୁ ଆସି ପହଞ୍ଚିଗଲାଣି...କୋଟି ପରମାୟୁ ହେବ ମୋ ମାଆର। (ପୁଣି Bell ବାଜିଲା) ଯାଉଛି ଯାଉଛି ଟିକିଏ ସବୁର କର। (କବାଟ ଖୋଲିଲେ) (ଆଶ୍ଚର୍ଯ୍ୟ ହୋଇ) ଆରେ ଆପଣ ହଠାତ୍.....କିଛି ଖବର ନଦେଇ...ଆସନ୍ତୁ।

ହିତେଶ - Surprise ଦେବାକୁ ଚାଲି ଆସିଲି। କ'ଣ ବସିବାକୁ କହିବନି..... ?

ଛବି - ବସନ୍ତୁ....ଏକ୍‌ଚୁଏଲି.....ମୁଁ ଭାବିଥିଲି ପରୀ ଆସିବ ବୋଲି। ତାକୁ ହିଁ ଅପେକ୍ଷା କରି ବସିଥିଲି।

ହିତେଶ - ପରୀ କିଏ- କ'ଣ ସ୍ୱର୍ଗର ନା ମର୍ତ୍ତ୍ୟର ପରୀ?

ଛବି - ସ୍ୱର୍ଗର ପରୀଟିଏ ମୋ ଭାଗ୍ୟକୁ ସ୍ୱର୍ଗରୁ ଓହ୍ଲେଇ ଆସି ମୋରି ଅଗଣାରେ ପାଦଥାପିଛି। ମୋତେ ଧନ୍ୟ କରିଦେଇଛି। ଧନ୍ୟକରି ଦେଇଛି ମୋ ମାତୃତ୍ୱକୁ। ସ୍କୁଲ ଯାଇଛି। ଫେରିବା ବେଳହେଲାଣି। ବସନ୍ତୁ ମୁଁ ତା'ପାଇଁ ୨ଟା ଚକୁଳି କରିଦିଏ। ଭୋକରେ ବିଚରା ଆଉଟୁ ପାଉଟୁ ହେବଣି। ଆପଣଙ୍କ ପାଇଁ ବି' ଚକୁଳି ଆଉ ଚା କରିଦେଉଛି। ଖାଇବେ ଆଉ କଥା ହେବେ। (ପ୍ରସ୍ଥାନ)

ହିତେଶ - (ଚିନ୍ତିତ ଭାବେ ବୁଲିଲେ) ଛବି କହିଲା ପରୀ ତା'ଝିଅ। ତା'ହେଲେ ଛବି କ'ଣ ବିବାହିତା? କାହିଁ ତା'ମୁଣ୍ଡରେ ତ ସିନ୍ଦୁର ନାହିଁକି ହାତରେ ଶଙ୍ଖାବି ପିନ୍ଧିନି। ତା'ହେଲେ ଛବି କ'ଣ ବିଧବା? ଏତେ ସବୁ କଥା ତ ମୋତେ କାହିଁ ରାତି କିଛି କହିଲା ନାହିଁ। ସେ କ'ଣ ମୋତେ ମିଛ କହିଲା? ନା ଏଠି ଆସି ମୁଁ ଯାହା ଶୁଣୁଛି, ଦେଖୁଛି ସେ ସବୁ ମିଛ? ଦୀର୍ଘ ୧୦ ବର୍ଷପରେ ଦେଶକୁ ଫେରି ଆସୁ ଆସୁ ପ୍ରଥମେ କେବଳ ମିଛ ମାନଙ୍କ ସହିତ ହେଲା ମୋର ପ୍ରଥମ ସାକ୍ଷାତ କାର। ଆଗକୁ ଆଗକୁ ସାରା ଜୀବନ ପଡ଼ିଛି। ବିଦେଶରେ ଆବେଗ ଆଉ ସମ୍ପର୍କ ସବୁ ମୂଲ୍ୟହୀନ ହେଲାବେଳେ ଏଠି ଖାଲି ମିଛ ମିଛର ସଂସାର। ପ୍ରକୃତ ଜୀବନର ସ୍ୱାଦ ତା'ହେଲେ କେଉଁଠି ମିଳିବ?

ଛବି - (ପ୍ରବେଶୀ) କ'ଣ ଖୋଜୁଛନ୍ତି କହନ୍ତୁ? କେଉଁଠି ମିଳିବ କହିଦେବି। ଏଇ ନିଅନ୍ତୁ ଚକୁଳି ଖାଆନ୍ତୁ-ଚା ରେ ଚିନିପଡ଼ିବ ନା Suger free tablet?

ହିତେଶ - ଯାହା ହେଲେବି ଚଳିବ। Red tea ହେଲେ ଆହୁରି ଭଲ।

ଛବି - କ'ଣ ଖୋଜୁଥିଲେ ପରା? Market Complex କୁ ଚାଲିଗଲେ ପ୍ରାୟ ସବୁ ଜିନିଷ ପାଇଯିବେ। ୧୦ବର୍ଷ ତଳର ସହରଟା ବେଶ କିଛି ବଦଳି ଯାଇଛି ସତ ହେଲେ ପୂରାପୂରି ବଦଳି ପାରିନାହିଁ।

ହିତେଶ - ନା ନା ସେମିତି କିଛି ନୁହେଁ।

ଛବି - ହଁ କ'ଣ ଗୋଟିଏ ଦେଶ ବିଦେଶ କଥା କହୁଥିଲା ପରିଲାଗିଲା। ଯେତେ ବଦଳିଲେ ବି ଆମ ଦେଶ କେବେବି ବିଦେଶ ଭଳି କ'ଣ ହୋଇପାରିବ ବୋଲି ଭାବୁଛନ୍ତି ? ଆମ ଦେଶ ଆଉ ଆମ ମଣିଷ ମାନଙ୍କ ସହିତ ବିଦେଶ ଅଥବା ବିଦେଶୀ ମାନଙ୍କୁ ସହିତ ତୁଳନା କରିବା ଉଚିତ ନୁହେଁ।

ହିତେଶ - ବିଦେଶରେ ସମ୍ପର୍କ ମିଛ। ଏଠି ସଂସାର ମିଛ। ତା'ହେଲେ ମଣିଷ ରହିବ କେଉଁଠି ?

ଛବି - (ହସିଲା ଦୀର୍ଘ ହସ) ଓ ହୋ.... ଆପଣଙ୍କ Problem ଟା ତା ହେଲେ ଏଇଠି। ଆଚ୍ଛା ଏ ପ୍ରଶ୍ନ ପଚାରୁଥିଲେ କାହାକୁ ? ଶୂନ୍ୟକୁ ନା ନିଜକୁ ? କାରଣ ଏଠି ତ ଆପଣଙ୍କ ବ୍ୟତୀତ ଆଉ କେହିବି ନ ଥିଲେ ?

ହିତେଶ - ହଁ ନିଜ ମନକୁ।

ଛବି - (ହସି) ଉତ୍ତର କିଛି ପାଇଲେ ନା ନାହିଁ ?

ହିତେଶ - ନା ଏ ଯାଏ ତ କିଛି ପାଇନି। ତୁମକୁ ଯଦି ଜଣାଅଛି କହୁନ ଶୁଣେ।

ଛବି - ହଁ ଉତ୍ତର ଅଛି । କିନ୍ତୁ ସେ ଉତ୍ତର ମୋ ପାଇଁ । ଆପଣଙ୍କୁ ସେ ଉତ୍ତର ଠିକ୍ ଲାଗି ନପାରେ।

ହିତେଶ - କାହିଁକି ?

ଛବି - ପସନ୍ଦ ଅପନି ଅପନି।

ହିତେଶ - ତଥାପି କୁହ। ଶୁଣିବାକୁ ଇଚ୍ଛା ହେଉଛି।

ଛବି - Very simple- ଆପଣ ପଢିଥିବେ Every Action has same and oposite reaction । ପାହାଡ ତଳେ ଠିଆ ହୋଇ ଚିତ୍କାର କଲେ ନିଜକୁ କେବଳ ନିଜ ଚିତ୍କାରର ପ୍ରତିଧ୍ୱନୀ ହିଁ ତ ଶୁଣାଯିବ। ସେମିତି କାନ୍ଥକୁ ବଲଟିଏ ଫୋପାଡିଲେ ସେଇ ବଲଟା ସମଭାବରେ ନିଜ ଆଡକୁ ହିଁ ଫେରି ଆସିବ। ଅନ୍ୟ ଆଡକୁ ଗୋଟିଏ ଆଙ୍ଗୁଳି ଦେଖାଇଲେ ନିଜର ତିନୋଟି ଆଙ୍ଗୁଳି ହିଁ ନିଜଆଡକୁ ଦେଖାଯିବ।

ହିତେଶ - ତୁମେ ମୋତେ ଆକ୍ଷେପ କରୁଛ।

ଛବି - ମୁଁ କ'ଣ ମିଛ କହିଲିକି ? ଏହାତ ପ୍ରକୃତିର ନିୟମ। As you sow so you reap । ଏଥିରେ ଆକ୍ଷେପର ଅପେକ୍ଷା ରହିଲା କେଉଁଠି ? ଉତ୍ତର ଘଢ଼ିଲି କହିଦେଲି। ତୁମକୁ ଖରାପ ଲାଗିଥିଲେ Sorry ।

ହିତେଶ - ତା'ହେଲେ ମୋର ଅନ୍ୟ ପ୍ରଶ୍ନର ଉତ୍ତର ବି'ତ ତୁମେ ଦେଇପାରିବ ?

ଛବି - ଉତ୍ତର ଜଣାଥିଲେ ଅବଶ୍ୟ ଦେବି।

ହିତେଶ - ପରୀ କ'ଣ ତୁମର ଝିଅ ?

ଛବି - (ଆଶ୍ଚର୍ଯ୍ୟ ହୋଇ) କ'ଣ କହିଲେ ? ଆଉଥରେ କୁହନ୍ତୁ ତ ?

ହିତେଶ - ପରୀର ପରିଚୟ କ'ଣ ?

ଛବି - ମୋ ସହିତ ପରୀର ସମ୍ପର୍କ ତ ମାଆ ଝିଅର ସମ୍ପର୍କ।

ହିତେଶ - ତୁମେ କ'ଣ ବିବାହିତା ?

ଛବି - (ହସିହସି) ଏ ପ୍ରଶ୍ନର ଉତ୍ତର ତ ମୋର ଦେବାର ଆବଶ୍ୟକତା ନାହିଁ। ମୋତେ ଦେଖୁଥିବା ଯେ କୌଣସି ସାଧାରଣ ଲୋକ ବି ଏ ପ୍ରଶ୍ନର ଉତ୍ତର ଦେଇପାରିବ।

ହିତେଶ - ତୁମେ ତା'ହେଲେ କ'ଣ ବିଧବା ?

ଛବି - (ଖୁବ୍ ହସିଛି) ଏସବୁ ପ୍ରଶ୍ନ ତ ଆଦୌ ପ୍ରଶ୍ନବାଚୀ ନୁହେଁ। ଏହାର ଉତ୍ତର କ'ଣ ବା ଦେବି ?

ହିତେଶ - ତାଙ୍କର ନାମ କ'ଣ ଥିଲା ?... ବାହାଘର ପ୍ରେମର ନା ପ୍ରସ୍ତାବିତ ବାହାଘର ଥିଲା ?

ଛବି - (ଖୁବ୍ ଜୋରରେ ହସିଛି) ଆପଣଙ୍କର ଏଇ ପ୍ରଶ୍ନ ସବୁ ଭିତରୁ କେବଳ ଆପଣଙ୍କ ଅନ୍ତରାତ୍ମାର ପ୍ରତିଧ୍ୱନି ହିଁ ମୋତେ ଶୁଣା ଯାଉଛି। ଆପଣଙ୍କ ଅନ୍ତରରେ ଆଉ ପ୍ରେମରେ ଭିଜା ସେ ମାଟିର ମହକ ନାହିଁ। ସେଠି ଏବେ ଲହଡୀ ମାରୁଛି ଆରବ ସାଗରର କଳାକଳା ପୋତି ଗନ୍ଧମୟ ସନ୍ଦେହର ଢେଉ। ପ୍ରତାରଣାର ଦୁର୍ଗନ୍ଧ । ଯାହା ସ୍ୱାଭାବିକ । କାରଣ ବିଗତ ୧୦ ବର୍ଷ ଧରି ଆପଣ ତ କେବଳ ସେଇ ଫସଲର ଚାଷ ହିଁ କରି ଆସିଛନ୍ତି। ଆଉ ଆଜି ଅମଳର ସମୟ ଆସିଲା ବେଳକୁ ସ୍ନେହ, ସରାଗ, ମମତା ଖୋଜିଲେ ପାଇବେ କେଉଁଠୁ। ବରଂ ସେ ସବୁ ପ୍ରଶ୍ନର ଉତ୍ତର ଆପଣ ନିଜେ ଖୋଜି ନିଅନ୍ତୁ ଶାନ୍ତି ପାଇବେ। ମୋ ଉତ୍ତରରେ ଆପଣ ସନ୍ତୋଷ ହୋଇ ନପାରନ୍ତି।

ହିତେଶ - କାହିଁକି ?

ଛବି - ନା ଆପଣ ମୋ କଥାକୁ ବିଶ୍ୱାସ କରିବେ ନା ଆଶ୍ୱସ୍ତ ହୋଇ ପାରିବେ ବରଂ ସନ୍ଦେହ ଆହୁରି ବଢିବ। (Bell ବାଜିଲା) କବାଟ ଖୋଲାଅଛି। ଆସ...(କପ୍‌ଧରି ନାଚିନାଚି ଆସିଲା ପରୀ)

ପରୀ - Hip Hip Hurray । ଦେଖୁଲୁତ ମାଆ-ମୁଁ ପୁଣି First ହୋଇଛି। Collector ସାହେବ ମୋତେ Prize ଦେଇଛନ୍ତି। ମୁଁ କହିଥିଲି ନା ଅଲବତ ଜିତିବି (ହିତେଶ କୁ ଦେଖି) ଏ କିଏ ମାଆ ?

ଛବି - ନମସ୍କାର କର। ଇଏ ହିତେଶ ବାବୁ। ମୋର ଜଣେ ପୁରୁଣା ବନ୍ଧୁ। ଆମେରିକାରେ ରହନ୍ତି। India ବୁଲିବାକୁ ଆସିଛନ୍ତି।

ହିତେଶ - ନା ନା ଏଇଟା ମୋର ପୂରା ପରିଚୟ ନୁହେଁ ମୋ ନାଁ ହିତେଶ ମହାନ୍ତି । ଇଞ୍ଜିନିୟର। ମୋ ଘର ଓଡିଶାରେ, ଚାକିରି କରିବାକୁ ଆମେରିକା ଯାଇଥିଲି। ଏବେ ଚାକିରି ଛାଡି ପୁଣି ଓଡିଶା ଫେରିଆସିଛି।

ପରୀ - ମୁଁ ମୋର ସାଙ୍ଗମାନଙ୍କ ପାଖରୁ ଶୁଣିଛି ଯେ ଯିଏ ଚାକିରି କରିବାକୁ ବିଦେଶକୁ ଯାଆନ୍ତି ସେମାନେ ଆଉ ଫେରି ଆସନ୍ତିନାହିଁ।

ହିତେଶ - ନା ସେଇଟା ସମସ୍ତଙ୍କ ପାଇଁ ସତ ନୁହେଁ।

ପରୀ - ମୋ ସାଙ୍ଗମାନଙ୍କ କକା, ମାମୁଁ, ମଉସା ଆଦି ଅନେକ ଲୋକ ବିଦେଶ ଯାଇ ଆଉ ଫେରି ନାହାଁନ୍ତି। ଏମିତିକି ମୋ ସାଙ୍ଗମାନେ କେବେ ତାଙ୍କୁ ଦେଖିବି ନାହାଁନ୍ତି।

ହିତେଶ - ଅନ୍ତତଃ ମୁଁ ସେମିତି ନୁହେଁ।

ପରୀ - ସେଥିପାଇଁ ଆପଣଙ୍କୁ ଧନ୍ୟବାଦ। ଆଚ୍ଛା ଅଙ୍କଲ ବିଦେଶରେ ଥିଲା ବେଳେ ଆପଣଙ୍କୁ ଗାଁ କଥା ମନେପଡେ ନାଇଁ, ବାପା ମାଆ ଭାଇ ଭଉଣୀ କଥା-

ହିତେଶ - ବହୁତ ମନେପଡେ...ସେତେବେଳେ ଭାରି ଏକା ଏକା ଲାଗେ।

ପରୀ - ସେଠି କାଳେ ବହୁତ ପଇସା ମିଳେ ?

ହିତେଶ - ଯନ୍ତ୍ରଣା ବି'କିଛି କମ୍ ମିଳେନା। ଏକାକିତ୍ୱର ଯନ୍ତ୍ରଣା, କହି ହୁଏନା କି ସହି ହୁଏନା....

ପରୀ - ମୁଁ ବଡ ହେଲେ ଚାକିରି କରିବାକୁ କେବେ ବିଦେଶକୁ ଯିବିନି।

ଛବି - (ହସିହସି) ପିଲାବେଳେ ସମସ୍ତେ ସେମିତି କହନ୍ତି ଲୋ ଝିଅ । ସମୟ ଆସିଲେ ସେଇମାନେ ପୁଣି ପଇସାର ଗୋଲାମି କରିବାକୁ ସଜବାଜ ହୋଇ ବାହାରି ପଡନ୍ତି। ଚାଲ ଚାଲ ଚକୁଳିପିଠା କେରିଦେଉଛି, ଖାଇବୁ।

ହିତେଶ - ମୁଁ ତା'ହେଲେ ଆସୁଛି।

ଛବି - ବସନ୍ତୁ ଚା ପିଇ ଯିବେ।

ହିତେଶ - ପୁଣିକେବେ ଆସେ ପିଇବି। (ପ୍ରସ୍ଥାନ)

ପରୀ - ଆଚ୍ଛା ମାଆ ଗୋଟିଏ କଥା ପଚାରିବି? ସତ କହିବୁ?

ଛବି - କହ।

ପରୀ - ମୋ ବାପା କାହାନ୍ତି? ମୁଁ କ'ଣ ତୋ ନିଜ ଝିଅ ନୁହେଁ? ତୁ କ'ଣ ମୋତେ ଆମର ଏଇ ମନ୍ଦିର ବେଢାରୁ ପାଇଥିଲୁ?

ଛବି - (ଆଶ୍ଚର୍ଯ୍ୟ ହୋଇ) ପରୀ! ଏସବୁତୁ କ'ଣ କହୁଛୁ? ତୋତେ ଏକଥା ସବୁ କିଏ କହିଲା?

ପରୀ - ମୋର ଜଣେ ଖେଳ ମିସ୍ ମୋତେ ଏସବୁ କଥା ପଚାରୁଥିଲେ।

ଛବି - କେବେ ପଚାରୁଥିଲେ? କାହିଁକି ପଚାରୁଥିଲେ?

ପରୀ - ଏଇ କେତେ ଦିନ ଭିତରେ ୨/୩ ଥର ମୋତେ ପଚାରିଲେଣି। କଥା କ'ଣ କି ! କିଛି ଦିନ ତଳେ ଖେଳପଡିଆରେ ମୋ ମୁଣ୍ଡ ବୁଲେଇ ହେଲା ସେ ମୋ ମୁଣ୍ଡ ଆଉଁସି ଦେଉଥିଲାବେଳେ ମୋ ବେକ ତଳର ନାଲି ଯାଇବନ୍ଧାକୁ ଦେଖି ହଠାତ୍ ଯେମିତି ଚମକି ପଡିଲେ ତା'ପରଠାରୁ ବାରମ୍ବାର ସେଇ ଗୋଟିଏ କଥା। ତୁ ମୋ ଝିଅ। ତୋ ମାଆ ତୋତେ ମୋ ଠାରୁ ଚୋରେଇ ନେଇଛି। ମୁଁ ଜଲଦି ତୋ ମାଆ ପାଖକୁ ଯିବି । ଆଉ ତାଠାରୁ ତୋତେ ଛଡେଇ ଆଣିବି। ସେ ନମାନିଲେ ମୁଁ ପୋଲିସ ଲଗେଇ ଦେବି। ତାଙ୍କ ଭାଇକାଳେ Police inspector ଅଛନ୍ତି।ମୋତେ ଡର ମାଡୁଛି ମାଆ।

ଛବି - ଆରେ ନା ନା। ତୋର ଆଦୌ ଡରିବାର ଦରକାର ନାହିଁ। ମୁଁ ତୋତେ ଛାଡିଲେ ତ ସେମାନେ ତୋତେ ନେଇଯିବେ। ତୁ ଯାଆ, ବହିବସ୍ତାନି ରଖି ଖାଇବୁ ଯାଆ। (ପରୀ ଭିତରକୁ ଗଲା ଛବି ରାତିକୁ Phone ଲଗାଇଲା) Hello ରାତି ତୁ ପ୍ରକାଶ ବାବୁଙ୍କୁ ଧରି ସାଙ୍ଗେ ସାଙ୍ଗେ ମୋ ଘରକୁ ଆସିପାରିବୁ କି? Most Urgent, ନହେଲେ ଏଠି ଅନର୍ଥ ହୋଇଯିବ। କ'ଣ କରିବି ମୁଁ କିଛି ଠିକ୍ କରିପାରୁନି Please ଶୀଘ୍ର ଆସିବୁ। ବାକି କଥା ମୁଁ Phone ରେ କହିପାରିବି ନାହିଁ। ଆସିଲେ କହିବି। ରହିଲି। (Phone କାଟିଲା କବାଟ ଠକ୍ ଠକ୍ ହେଲା। ଭିତରୁ ଧାଇଁ ଆସିଲା ପରୀ)

ପରୀ - ସେମାନେ ବୋଧହୁଏ ଆସିଗଲେ ମାଆ।

ଛବି - କିଏ ? ତୁ କାହା କଥା କହୁଛୁ?

ପରୀ - P E T Miss ଆଉ ତାଙ୍କର Police ଭାଇ।

ଛବି - ହଉ ତୁ ଭିତରକୁ ଯାଆ। ମୁଁ ଦେଖୁଛି? (ପରୀ ଭିତରକୁ ଗଲା। ଛବି ଯାଇ କବାଟ ଖୋଲିଲା) ଆପଣ କିଏ? କାହାକୁ ଖୋଜୁଛନ୍ତି?

P.Insp - ମୁଁ କିଏ ମୋ ପୋଷାକରୁ ଜାଣିପାରୁଥିବେ। ଆପଣଙ୍କ ନାଁ କ'ଣ ଛବି ଛନ୍ଦା ଗଡନାୟକ।

ଛବି - ଆଜ୍ଞା ହଁ । ଆଉ ଏ Madam କ'ଣ ଆପଣଙ୍କ ଭଉଣୀ?

P.Insp - ସେ ଆପଣଙ୍କ ନାମରେ ଅଭିଯୋଗ କରିଛି ଯେ ଆପଣ ତା' ଝିଅକୁ ଚୋରେଇ ଆଣିଛନ୍ତି।

ଛବି - ମୁଁ ଚୋରେଇ ଆଣିଛି? ତାଙ୍କ ଝିଅକୁ? କେବେ, କେଉଁଠାରୁ? କେମିତି?

P.Insp - ସେ କଥା ପରେ କହିବି। ଆଗେ କହନ୍ତୁ ଆପଣଙ୍କ ଝିଅ କେଉଁଠି ଜନ୍ମ ହୋଇଥିଲା। (କବାଟ ଠକ୍ ଠକ୍ ହେଲା)

ଛବି - କବାଟ ଖୋଲାଅଛି (ଭିତରକୁ ଆସିଲା ରାତି) ପ୍ରକାଶବାବୁ ଆସିଛନ୍ତି ନା ନାହିଁ?

ପ୍ରକାଶ - ଭାରି ଭୋକ ଖାଇବାକୁ କ'ଣ ଅଛି ଆଗ ଦିଅନ୍ତୁ। (Police କୁ ଦେଖି) ଆରେ ପ୍ରତାପ ବାବୁ ଆପଣ ଏଠି?

Police - ସେଇ କଥା ଯଦି ମୁଁ ଆପଣଙ୍କୁ ପଚାରେ।

ପ୍ରକାଶ - ଓ ଆପଣ ପରା ଏବେ Duty ରେ ଏଇ Madam ହେଲେ ମୋ ସ୍ତ୍ରୀଙ୍କର ବାନ୍ଧବୀ ଆଉ ମୋର Client. ଏଥର କହନ୍ତୁ ମୁଁ ଆପଣଙ୍କର କ'ଣ ସେବା କରିପାରେ।

P.Insp - ଏ ହେଉଛନ୍ତି ମୋ ମାମୁଁ ଝିଅ ଭଉଣୀ ସଂଯୁକ୍ତା ଦାସ- ପରୀର School ରେ PET ଅଛନ୍ତି। ତାଙ୍କ ଅଭିଯୋଗ ଯେ...

ଛବି - ମୁଁ କାଳେ ତାଙ୍କ ଝିଅକୁ ଚୋରେଇ ଆଣିଛି ।

P.Insp - ପରୀ ତ ଆପଣଙ୍କର ଜନ୍ମିତ ଝିଅ ନୁହେଁ।

ଛବି - (ନିରବ)

ରାତି - ନ ହୋଇପାରେ । ତା'ମାନେ କ'ଣ ସେ ଚୋରି କରି ଆଣିଛି ? ନା ଆପଣଙ୍କ ଭଉଣୀ ଝିଅ ଜନ୍ମ କରି ତାକୁ ମାରିଦେବା ପାଇଁ ଫୋପାଡି ଦେଇଥିଲେ ?

P.Insp - ଫୋପାଡି ଦେଇଥିଲେ ବୋଲି ପ୍ରମାଣ କ'ଣ ?

ଛବି - ତାଙ୍କର ଝିଅ ବୋଲି ପ୍ରମାଣ କ'ଣ ?

P.Insp - Very simple D.N.A. Test କଲେ ଜଣାପଡିଯିବ।

ପ୍ରକାଶ - ସେ ତ ବହୁ ଦୂରର କଥା। ଆପଣ ଆଗେ କହନ୍ତୁ କେଉଁ ଅଧିକାରରେ ବା କେଉଁ court ର Permission ନେଇ ଏତେ ରାତିରେ ଜଣେ ସ୍ତ୍ରୀ ଲୋକଙ୍କ ଘରକୁ ଆସିଛନ୍ତି ଆପଣ। ନା, ଭଉଣୀର ପକ୍ଷ ନେଇ ପୋଲିସ ପୋଷାକରେ ଧମକ ଦେବାକୁ ଆସିଛନ୍ତି। ରହନ୍ତୁ ରହନ୍ତୁ, ମୁଁ ଆଗ ଗୋଟିଏ Selfi ନେଇଯାଏ !

P.Insp - Selfi କାହିଁକି ନେବେ।

ପ୍ରକାଶ - ସାଙ୍ଗରେ କ'ଣ Warrant ଆଣିଛନ୍ତି ନା ନାହିଁ। କାହିଁ ଦେଖି ? ଆଣିନାହାଁନ୍ତି ନୁହେଁ? ବୁଝିଲେ ଆଜ୍ଞା ବୁଡିଗଲା ପାଦ ତଳକୁ ତଳକୁ। ପ୍ରଥମେ ଆପଣଙ୍କ ଭଉଣୀ ଝିଅଟିକୁ ମାରିଦେବାର ଚେଷ୍ଟାରେ Dustbin କୁ ପିଲାଟିକୁ ଫୋପାଡି ଦେଇଥିଲେ । ଆଉ ଆଜି ସିଏ ବଂଚିଯିବାର ଦେଖି ପୁଣିତାକୁ ମାରିଦେବାର ଚକ୍ରାନ୍ତ କରୁଛନ୍ତି। ଆଉ ଆପଣ ଆଇନର ରକ୍ଷା କର୍ତ୍ତା ହୋଇ ଅପରାଧୀର ସହାୟତା କରୁଛନ୍ତି । ଯଦି ସହାୟତା କରିବାକୁ ଚାହାଁନ୍ତି ତା'ହେଲେ Court କୁ ଚାଲନ୍ତୁ ଆଇନର ସାହାଯ୍ୟ ନେବା। ତାପରେ court ଯାହାକୁ ଅଧିକାର ଦେବ ଝିଅ ତା'ର ହେବ। ଜନ୍ମିତା ମାଆର ନା ପାଳିତା ମାଆର।

P.Insp - Ok ସେଇ Court ରେ ଦେଖା ହେବ ଆସ ନାନୀ।

ଛବି - Court ରେ କ'ଣ ହେବ ଯେ। ମୋତେ ଭାରି ଡର ଲାଗୁଛି

ରାତି - ସେତେବେଳେ ବି ମୁଁ ତୋତେ କହିଥିଲି ଅନାଥାଶ୍ରମକୁ ଦେଇଦେ, ନ ହେଲେ Police କୁ handover କରିଦେ । ସେତେବେଳେ ତୁ ମୋ କଥା ଶୁଣିଲୁ ନାହିଁ।

ଛବି - ଆରେ ସେତେବେଳେ ପିଲାଟା ଜୀବନ ମରଣ ସହ ଲଢୁଥିଲା । ଜନ୍ଦା ପିମ୍ପୁଡି ତା ନାକ କୁ କାଟି ଝୁଣି ଦେଇଥିଲେ, ଟିକିଏ ଅଯତ୍ନ ହୋଇଥିଲେ ନିମୋନିଆରେ ତା ଜୀବନ ଚାଲିଯାଇଥାନ୍ତା। ତାକୁ ନେଇ ଡାକ୍ତରଖାନାରେ ରଖି ଚିକିତ୍ସା କରିବାଟା କ'ଣ ମୋର ଭୁଲ । ଯେଉଁ ମାଆ କଅଁଳା ଛୁଆଟାକୁ ଝିଅ ବୋଲି ଭାବି ଫୋପାଡି ଦେଇଥିଲା । ଝିଅ ବଡ ହୋଇଗଲା ପରେ ସେଇ ମା ଆପେ ତାକୁ ଦାବି କରିବ କେହି କ'ଣ ଏକଥା ବିଶ୍ୱାସ କରିପାରିବ ?

ରାତି - ତଥାପି ମୁଁ କହିବି ତୁ ଠିକ୍ କରିନାହୁଁ।

ଛବି - ମୋ ଅନ୍ତରାତ୍ମାର ସ୍ୱରକୁ ସମ୍ମାନ ଜଣାଇ ମୁଁ ମୋର କର୍ତ୍ତବ୍ୟ କରିଛି। ଆଉ ସେଥିପାଇଁ ଯଦି ମୋତେ ଏପରି ଏକ ପରିସ୍ଥିତିର ସାମନା କରି Jail ଯିବାକୁ ହୁଏ ମୁଁ ପ୍ରସ୍ତୁତ। ଠିକ୍ ଅଛି । ପ୍ରକାଶ ବାବୁ ଆପଣଙ୍କ Fees ମୁଁ ନିଶ୍ଚୟ ଦେବି। ଦୟାକରି ଆପଣ ଏ କେଶ ଲଢନ୍ତୁ।

ପ୍ରକାଶ - ଆପଣ ଯାହା କରିଛନ୍ତି ଠିକ୍ କରିଛନ୍ତି। ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଆପଣଙ୍କ Case ଲଢ଼ିବି। ପୁଣି ବିନା ପାଉଣାରେ ଲଢ଼ିବି। ଦେଖିବି ଆଇନ ଆଉ ମାନବିକତାର ଏଇ ଲଢେଇ ଭିତରେ କିଏ ଜିତୁଛି ? ଏଇଟା ମୋ ପାଇଁ ଯେମିତି ଗୋଟିଏ Challenge ଆମ ସୋସାଇଟି ପାଇଁ ସେମିତି ଏକ ଉଦାହରଣ ହୋଇରହିବ।

ରାତି - ଏବେ ଚାଲ ଯିବା।

ଛବି - ଚା ପିଇବୁ ନାହିଁ ?

ପ୍ରକାଶ - ନା ! ଆପଣ ଆଗ ଚାଲନ୍ତୁ ପୋଲିସ Inspecter ଆଉ ତାଙ୍କ ଭଉଣୀ ନାଁରେ F.I.R ଲେଖି ଦେଇ ଆସିବେ। That is very important and Urgent.

ଛବି - ତୁ ଝିଅ ପାଖରେ ଥାଆ ଆମେ ଆସୁଛୁ

ପରୀ - ମାଆ ତୁମେ କୁଆଡେ ଯିବ ? ମୁଁ ବି' ତୁମ ସାଙ୍ଗରେ ଯିବି।

ପ୍ରକାଶ - ହଉ ଚାଲ ସମସ୍ତେ ସାଙ୍ଗ ହୋଇ ଯିବା। (ଚାଲିଲ)

(ଅନ୍ଧାର)

## ଶେଷଦୃଶ୍ୟ

(Court Room, ଜଜ୍‌ବସିଛନ୍ତି, କାଠ ଗଡାର ଗୋଟିଏ ପାଖରେ ଛବି ଅନ୍ୟ ପାଖରେ PET Madam)

ଜଜ୍ - Order, Order,- ଏଥର ଜବାବ ସୁଆଲ ଆରମ୍ଭ କର।

ପ୍ରକାଶ - ଧନ୍ୟବାଦ୍ ଆଚ୍ଛା ପ୍ରଣତୀ ଦେବୀ ଆପଣଙ୍କ ଅଭିଯୋଗ ଯେ ଛବି ଛନ୍ଦା ଦେବୀ ଆପଣଙ୍କ ଝିଅକୁ ମନ୍ଦିର ବେଢାରୁ ଚୋରି କରି ନେଇଥିଲେ।

ପ୍ରଣତି - ଆଜ୍ଞା ହଁ।

ପ୍ରକାଶ - ସେଦିନ ଟା କେତେ ମସିହା, ତାରିଖ, ସମୟ କିଛି ମନେ ଅଛି।

ପ୍ରଣତି - ସେଦିନର କଥା ମୁଁ କେବେ ଜୀବନରେ ଭୁଲିପାରିବି ନାହିଁ। ସେଦିନ ଥିଲା ୨୦୦୭ ମସିହା ଜୁଲାଇ ୧୮ ତାରିଖ ସକାଳ ପ୍ରାୟ ୯ଟା....

ପ୍ରକାଶ - ନଅଟା ନା ସକଳା ୬ଟା...ଠିକ୍ କରି ମନେ ପକେଇ କହନ୍ତୁ।

ପ୍ରଣତି - ନାଇଁ ନାଇଁ ମନ୍ଦିର ଘଣ୍ଟାରେ ୯ଟା ବାଜିଥିଲା।

ପ୍ରଣତି - ସେତେବେଳକୁ ଝିଅର ବୟସ କେତେ ହୋଇଥିଲା । I mean କେତେବର୍ଷ, ବା କେତେ ମାସ ବା କେତେ ଦିନ ହୋଇଥିଲା କହନ୍ତୁ।

ପ୍ରଣତି - (ଥତମତ ହୋଇ) ସେ କଥା ଠିକ୍ ମନେ ନାହିଁ।

ପ୍ରକାଶ - ମନେ ନାହିଁ ନା ଆପଣ କହିବାକୁ ଚାହୁଁନାହାଁନ୍ତି ?

ପ୍ରଣତିର

ଓକିଲ - Objection my Lord.....

ଜଜ୍ - Objection sustained...

ପ୍ରକାଶ - ଆଚ୍ଛା ପ୍ରଣତି ଦେବୀ ଆପଣଙ୍କ ଝିଅ କେବେ ଓ କେଉଁଠି ଜନ୍ମ ହୋଇଥିଲା ସେ କଥା ତ କହିପାରିବେ ?

ପ୍ରଣତି - (ଥଙ୍ଗେଇ) ମନେ ପଡୁନି....

ପ୍ରକାଶ- ତା'ହେଲେ ମୁଁ ମନେ ପକେଇ ଦେଉଛି....ଆପଣଙ୍କ ଝିଅ ୨୦୦୭ ମସିହା ଜୁଲାଇ ୧୭ ତାରିଖ ରାତି ୧୦ଟାରେ District hospital ରେ ଜନ୍ମ ହୋଇଥିଲା Bed No- ଥିଲା ୧୨.... ଆଉ ସବୁଠାରୁ Interesting କଥା ହେଲା ସେଇ ଦିନ ରାତିରୁ ପ୍ରଣତି ଦେବୀ ହସପିଟାଲକୁ ନ ଜଣାଇ ପିଲାଟିକୁ ଧରି absconded ହୋଇ ଯାଇଥିଲେ। ସତ ନା ମିଛ କହନ୍ତୁ। ଏଇ ରହିଲା Hospital Record ର କପି....। ସେଦିନ ରାତିରେ କ'ଣ ଏମିତି ଘଟଣା ଘଟିଲା ଯେ ଆପଣ Discharge ନହୋଇ, ସକାଳ କୁ ଅପେକ୍ଷା ନକରି ରାତାରାତି ପିଲାଟିକୁ ଧରି ପଳେଇଲେ। ଆଉ ମାତ୍ର ୨୦ ଘଣ୍ଟାର କଅଁଳା ପିଲାଟିକୁ ଧରି ମନ୍ଦିର ଭିତରକୁ କେମିତି ଯାଇ ପାରିଲେ ଆପଣତ ଅଶୌଚ ଥିବେ ନା...କୁହନ୍ତୁ...ମୁଁ ଜାଣେ ଏ ଉତ୍ତର ଆପଣ ଦେଇ ପାରିବେ ନାହିଁ। କାରଣ ଆପଣ ସେଦିନ ମନ୍ଦିର ଯାଇ ନଥିଲେ ମନ୍ଦିର ବାହାରେ ଥିବା Dustbeen ପାଖରେ ପିଲାଟିକୁ ରଖି ଦେଇ ଆପଣ ପଳେଇ ଯାଇଥିଲେ। My Lord ୨ୟ ପ୍ରମାଣ ହେଲା ପ୍ରଣତି ଦେବୀ ଏଥର କହନ୍ତୁ ଆପଣଙ୍କ ପିଲା ଚୋରି ପରେ ଆପଣ Police station ରେ F.I.R. କରିଥିଲେ କି ?

ପ୍ରଣତି ଓକିଲ- ଏଇ ରହିଲା F.I.R ର କପି....

ପ୍ରକାଶ- ଏଇ Copy ମାତ୍ର ୧ ମାସ ତଳେ Town ଥାନାରେ record କରାଯାଇଛି ଯେଉଁଠାରେ ପ୍ରଣତି ଦେବୀଙ୍କର ପିଉସି ପୁଅ ଭାଇ ଥାନା incharge ଅଛନ୍ତି। ଏଇ ରହିଲା ମୋର ପ୍ରମାଣ ୨୦୦୭ ଜୁଲାଇ ଓ ଅଗଷ୍ଟ ମାସର Town ଥାନାର F.I.R record R.T.I Act ରେ ମଗାଯାଇଥିଲା ଯେଉଁଥିରେ ପ୍ରଣତି ଦେବୀଙ୍କର କୌଣସି F I R ର ରେକର୍ଡ ନାହିଁ। କାରଣ ପ୍ରଣତି ଦେବୀ ସେତେବେଳେ F.I.R କରିନଥିଲେ କିମ୍ବା ନିଜର କନ୍ୟାସନ୍ତାନକୁ ସେ ଆପଣେଇ ନେବାକୁ ଇଚ୍ଛା କରିନଥିଲେ। ୩ୟ ପ୍ରମାଣ ହେଲା ପୂଜାରୀ ମହାଶୟଙ୍କ ସ୍ୱୀକାରୋକ୍ତି। ଏଇ ନିଅନ୍ତୁ My Lord ୨୦୧୦ ମସିହାରେ ମନ୍ଦିର କମିଟି ଦ୍ୱାରା ନିଯୁକ୍ତ ପୂଜାରୀଙ୍କ ନିଯୁକ୍ତି ପତ୍ରର Copy । ଅତଏବ ୨୦୧୦ରେ ମନ୍ଦିରରେ ପୂଜାରେ ନିଯୁକ୍ତି ପାଇଁଥିବା ପୂଜକ ୨୦୦୭ ମସିହାରେ ଘଟିଥିବା ଘଟଣାକୁ ସେ ଦେଖିଲେ କେମିତି ? ଏହାର ଅର୍ଥ ହେଲା ଏଯାବତ୍ ପ୍ରଣତି ଦେବୀଙ୍କର ଦାଖଲ ସମସ୍ତ ଅଭିଯୋଗ ଓ ପ୍ରମାଣ ମିଥ୍ୟା ଅଟେ।

ଏଣୁ ମୁଁ ମାନ୍ୟବର Court ଙ୍କୁ ଅନୁରୋଧ କରିବି ଯେ କନ୍ୟାସନ୍ତାନକୁ ମୃତ୍ୟୁ ପାଇଁ ଠେଲିଦେଇଥିବା ମାଆ ବିରୁଦ୍ଧରେ ଅଭିଯୋଗ ଫର୍ଦ ଦାଖଲର ଅନୁମତି ପ୍ରଦାନ କରନ୍ତୁ, ତା'ହେଲେ ଯାଇ ଆମ ଦେଶରେ କନ୍ୟାରତ୍ନ ମାନେ ଅଧିକ ସୁରକ୍ଷିତ ରହିପାରିବେ Thats all my Lord ଜର୍ଜ Order order- ଦୁଇ ପକ୍ଷର ଜବାବ ସୁ ଆୟ ଏବଂ D.N.A Report ସବୁ Court ର ହସ୍ତଗତ ହେବା ପରେ ସେସବୁକୁ ଗଭୀର ଭାବେ ଅନୁଧ୍ୟାନ କରିବା ପାଇଁ ପରବର୍ତ୍ତି ତାରିଖ ପର୍ଯ୍ୟନ୍ତ Judgement କୁ ସ୍ଥଗିତ କରାଗଲା....

ପରୀ- କ୍ଷମା କରିବେ ହଜୁର। ମୋର କିଛି କହିବାର ଅଛି।

ଜଜ- କାଗଗଡାକୁ ଆସ....... (କାଠ ଗଡାକୁ ଆସି)

ପରୀ- ହଜୁର ମୁଁ ସେଇ ଝିଅ ଯାହାର ମାଆ ଖୋଜିବା ଚାଲିଛି। ଆଉ ଦୁଃଖର କଥା ଯେ ସେଥିପାଇଁ ମାନ୍ୟବର ଅଦାଲତଙ୍କ ଦ୍ୱାରସ୍ଥ ହେବାକୁ ପଡୁଛି। କଥାରେ କହନ୍ତି ହଜାରେ ଗାଈ ଗୋଠ ଭିତରେବି, ବାଛୁରି ତା'ମାଆକୁ ଖୋଜିନିଏ। ଏଣୁ ମାନ୍ୟବର ଅଦାଲତଙ୍କୁ ମୁଁ ଅନୁରୋଧ କରିବି ଯେ ମୋ ମାଆକୁ ବାଛିବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଯାଉ। ତା'ଛଡା ମାନନୀୟ ଅଦାଲତଙ୍କ ଆଗରେ ଇତିହାସର ଉଦାହରଣ ଟିଏ ରଖିବାକୁ ଚାହୁଁଛି। ଥରେ ସିଦ୍ଧାର୍ଥ ଧ୍ୟାନ କରୁଥିବା ବେଳେ ଆକାଶରୁ ଏକ ଶରବିଦ୍ଧ ହଂସ ଆସି ତାଙ୍କ ପାଦତଳେ

ପଡିଲା ସିଦ୍ଧାର୍ଥ ହଂସ ଦେହରୁ ଶର ବାହାର କରି ତା'ର ସେବା ଶୁଶ୍ରୁଷା କଲେ ଏତିକି ବେଳେ ହଂସକୁ ଶରାଘାତ କରିଥିବା ତାଙ୍କର ଭାଇ ଦେବଦତ୍ତ ଧନୁଶର ଧରି ଆସି ସେଠି ପହଞ୍ଚିଗଲେ ଓ ହଂସ ଟିକୁ ମାଗିଲେ । ସିଦ୍ଧାର୍ଥ ମନାକଲେ। ହଂସ ଉପରେ ଅଧିକାର ପାଇଁ ଦୁଇପକ୍ଷ ଅଡି ବସିବାରୁ ମହାରାଜ ସୁଦ୍ଧୋଦନଙ୍କୁ ହସ୍ତକ୍ଷେପ କରିବାକୁ ପଡିଲା। ଶେଷରେ ମହାରାଜ ତାଙ୍କ ରାୟ ଦେଇ କହିଥିଲେ ଯେ- ହଂସର ଜୀବନ ରକ୍ଷାକାରୀ ହିଁ ତା'ର ଅସଲ ଉତ୍ତରାଧିକାରୀ- କାରଣ ହତ୍ୟାକାରୀ ହାତରେ ହଂସ କୁ ଟେକି ଦେବାର ଅର୍ଥ ତାକୁ ପୁଣିଥରେ ମୃତ୍ୟୁ ମୁଖକୁ ଠେଲିଦେବା। ଆଶାକରେ ମାନନୀୟ ଅଦାଲତଙ୍କୁ ମୋର ମାଆ ଖୋଜାର ସମାଧାନ ପାଇଁ ମୋର ଏତିକି ଅନୁରୋଧ ହିଁ ଯଥେଷ୍ଟ ହେବ- କାରଣ ମାନ୍ୟବର ଅଦାଲତଙ୍କ ସୁଚିନ୍ତିତ ସିଦ୍ଧାନ୍ତ ଉପରେ ହିଁ ମୋ ଜୀବନ ମରଣର ସିଦ୍ଧାନ୍ତ ଜଡିତ। ଧନ୍ୟବାଦ...

ଜଜ୍ - Order Order....The court is adjourned till next date.

(ଅନ୍ଧାର)

(ଦୃଶ୍ୟାରମ୍ଭରେ ଏକ ମଲ୍‌ଟିସେଟ୍‌ର ଯୋଜନା କରାଯାଇପାରେ)

ପିଲାର ସ୍ୱର - Hello.....hello

ବାପା - (ନିଦରୁ ଉଠି) କିଏ ଯେମିତି ମୋତେ ଡ଼ାକୁଛି ? ନା ମୁଁ ସ୍ୱପ୍ନ ଦେଖୁଛି ? (ନିଜକୁ ଚିମୁଟିଛି) ଆଃ...ନା ମୁଁ ତ ଶୋଇନି। ଏଇଟା କ'ଣ ମୋ ମନର ଭ୍ରମ? କିଏ କାହିଁକି ମୋତେ ବା ଡାକିବ ? ମୋ ପାଖରେ ବା କାହାର କାମ କ'ଣ ?

ପିଲାର ସ୍ୱର - Hello.....hello .... Papa !

ବାପା କିଏ ତୁମେ ?..... କିଏ ମୋତେ ଡ଼ାକୁଛ ?.... କାହିଁକି ଡ଼ାକୁଛ ? ସତରେ କିଏ କ'ଣ ମୋତେ ଡାକୁଛି ? ଏବେ ଶୋଇବା ଦରକାର। (ବିଛଣାରେ ଶୋଇଲା)

ପିଲାର ସ୍ୱର - Hello.....hello

ବାପା - (ଚମକି ପଡ଼ିଲା) Papa.....?.....Papa ନୁହେଁ କୁହ ବାପା। ତେବେ କିଏ ବାପା ?....ମୁଁ? (ହସିଲା) କାହିଁକି ମୋତେ ତିରସ୍କାର କରୁଛ ଶିଶୁ? ମୁଁ ଜଣେ ସନ୍ତାନହୀନ, ପରିବାରହୀନ ନିର୍ଯାତିତ ପୁରୁଷ। Police ରେକର୍ଡ଼ରେ ମୁଁ ଜଣେ ଅଭିଯୁକ୍ତ ଆସାମୀ.....ଯିଏ ନିଜର ସ୍ତ୍ରୀକୁ ଯୌତୁକ ନିର୍ଯ୍ୟାତନା ଦେଇଛି। ମାନ୍ୟବର Court ଙ୍କ ଦୟାରୁ ଯିଏ ଆଜକୁ ୧୫ ବର୍ଷ ଧରି Anticipatory Bell ରେ ରହିଆସିଛି। ସେ ଦିନର ଜଣେ ୩୦ ବର୍ଷର ଯୁବକ ଗୋଟିଏ ମିଛ F.I.R ର ଜାଲରେ ଛନ୍ଦି ହୋଇ ବିଗତ ୧୫ ବର୍ଷ ଧରି ପ୍ରତିମୁହୂର୍ତ୍ତରେ ମୃତ୍ୟୁର ଯନ୍ତ୍ରଣାରେ ଜଳିଚାଲିଛି। ନିଜ ଭିତରର ଅକୁହା ଯନ୍ତ୍ରଣାକୁ ଏକା ଏକା ଗରଳ ଭଳି ପିଇ ଚାଲିଛି। କାହାର ବାପା ହେବାର ସ୍ୱପ୍ନ ମୁଁ ଦେଖିବି କାହିଁକି ?

ପିଲାର ସ୍ୱର - Hello Bapa

ବାପା - ଆଃ.... ପୁଣି ସେଇ ସ୍ୱର। ଆରେ ତୁମେ କିଏ, ତୁମେ ମୋ ପାଖରୁ କ'ଣ ଚାହଁ? (ଚିତ୍କାର)

ପିଲାର ସ୍ୱର - ମୁଁ ତୁମକୁ ଖୋଜୁଛି। Papa !

ବାପା - (ନିରବତା.....ପିଲାଟିର Photo ପାଖକୁ ଗଲେ) ମୁଁ ଜାଣେନା ତୁମେ କିଏ ? ତୁମ ନାମ କ'ଣ ଦିଆଯାଇଛି ? ଏମିତିକି ଏକଥା ବି ଜାଣେନା ଯେ ତୁମେ ପୁଅ ନା ଝିଅ ? କେମିତି ଜାଣିବି ? ଆମ ବାହାଘରର ଗୋଟିଏ ବର୍ଷ ପୁରି ଆସିବାକୁ ଆଉ ଅଳ୍ପ କିଛି ଦିନ ବାକିଥାଏ। ତୁମ ମାଆର ଏକମାତ୍ର ଜିଦ୍ ଯେ ସେ ତା'ର ବାପାଙ୍କ ଘରେ ଯାଇ ଆମର ପ୍ରଥମ ବିବାହ ବାର୍ଷିକ ଖୁବ୍ ଧୁମ୍ ଧାମ୍‌ରେ ପାଳନ କରିବ। ମୁଁ ତାକୁ ବୁଝେଇବାକୁ ଚେଷ୍ଟାକଲି। ଏଇ ଘରେ, ଏଇଠି ଆମର ସବୁ ସାଙ୍ଗସାଥିଙ୍କ ଗହଣରେ ଆମର ଦୁଇଟି ପରିବାରଙ୍କୁ ଡ଼ାକି ନିରାଡମ୍ବର ଭାବରେ ଆମର ବିବାହର ପ୍ରଥମ ବାର୍ଷିକି ପାଳିବା। ଆଉ ଆମର ବଳକା ପଇସାକୁ ଆମେ ଦୁଃଖୀ ରଙ୍କିଙ୍କ ପାଇଁ ମୁଖ୍ୟମନ୍ତ୍ରୀ କିମ୍ବା ପ୍ରଧାନମନ୍ତ୍ରୀଙ୍କ ରିଲିଫ ପାଣ୍ଠିକୁ ଦାନ କରିଦେବା। ନା ହୋଇପାରିଲାନି। ସେ ତା ଜିଦ୍‌ରେ ଅଟଳ ରହିଲା। କାଳେ ଘରେ ବେଶି ପାଟିତୁଣ୍ଡ ହେବ....ସେଇ ଭୟରେ ମୁଁ ବି ନିରବ ରହିଲି। ତହିଁ ପରଦିନ ସକାଳେ ନିଦରୁ ଉଠି ଦେଖିଲି ସେ ତା' ବିଛଣାରେ ନାହିଁ Study Room ର ଟେବୁଲ୍ ଉପରେ ଗୋଟିଏ ଚିରକୁଟ୍ ଥୁଆ ହୋଇଛି। "ମୁଁ ବାପାଙ୍କ ଘରକୁ ଯାଉଛି" ବ୍ୟସ୍ତ ହୋଇ ମୁଁ ଫୋନ୍ ଲଗେଇଲି Phone ପୂରା Ring ହୋଇ

କଟିଲା । ତାପରେ ଅନେକବାର ଫୋନ୍ ଲେଗେଇଲି....କିନ୍ତୁ ଫୋନ୍ Switch off ଆସିଲା । ତା'ପରଠୁଁ ଆଜି ପର୍ଯ୍ୟନ୍ତ ସେ ନମ୍ବର ଆଉ କେବେବି Switch on ହୋଇନି । ଅଥଚ ତାର କେତେ ଦିନ ପରେ Police ଆସି ମୋତେ Arrest କରିବା ପାଇଁ ଘରେ ପହଞ୍ଚିଲା । ଯୌତୁକ ନିର୍ଯ୍ୟାତନାର ଅଭିଯୋଗରେ । ଭାଗ୍ୟଭଲ ମୁଁ ଘରେ ନଥିଲି । ମୁଁ ତ ବିଶ୍ୱାସ ବି କରିପାରିଲିନି ଯେ ଏମିତି ସାଧାରଣ କାରଣ ପାଇଁ ମଣିଷ ଏତେ ଦୂର ପ୍ରତିଶୋଧ ପରାୟଣ ହୋଇପାରେ । ମୁହୂର୍ତ୍ତକ ପାଇଁ ଆଶ୍ଚର୍ଯ୍ୟ ହୋଇଗଲି ଯେ ଏଇ ସେଇଝିଅ ଯାହାକୁ ମୁଁ ଭଲ ପାଉଥିଲି ବାହା ଘରର ବେଶ୍ ଆଗରୁ । ଯଦିଓ ଆମ ଦୁହିଁଙ୍କ ବିବାହ ଆମ ଦୁଇ ପରିବାରର ସହମତିରେ ହିଁ ହୋଇଥିଲା । ତଥାପି ଯୌବନର ଅନେକ ଦୁର୍ବଳ ମୁହୂର୍ତ୍ତକୁ ଆମେ ହାତରେ ହାତରଖି ନିରବରେ ଅନେକ ସନ୍ଧ୍ୟା ବିତେଇଥିଲୁ I.G Park ଏବଂ Forest Park ର ଘାସର ଗାଲିଚା ଉପରେ । (ଗୀତ) ବୋଧହୁଏ ଏହାରି ନାମ ହିଁ ଜୀବନ..... ଏହାରି ନାମ ହିଁ ପ୍ରେମ.... ଆଉ ଏହାରି ନାମ ହିଁ ପ୍ରତାରଣା.... । ଯଦିଓ ଘର ଛାଡ଼ି ଚାଲି ଗଲା ପୂର୍ବରୁ ମୁଁ ଜାଣିଥିଲି ଯେ ସେ ଥିଲା କିଛି ମାସର ଅନ୍ତଃସତ୍ତ୍ୱା...... । ହୁଏତ ତୁମେ ସେଇ ସନ୍ତାନ ହୋଇପାର । ତୁମର ଏଇ ବାପା ଡ଼ାକ ଖାଲି ମୋର ନୁହେଁ, ମୋ ଭଳି ଅସଂଖ୍ୟ ନିର୍ଦ୍ଦୋଷ ଅଥଚ ନିର୍ଯ୍ୟାତିତ ବାପାମାନଙ୍କର ପାଇଁ ଆଗାମୀ ଦିନର ଆଶାର କିରଣ । ହେ ଆଗାମୀ ପୃଥିବୀର ସମ୍ଭାବନାର ଉତ୍ତରପୁରୁଷ । ଏ ଦେଶର ଭବିଷ୍ୟତ । ତୁମର ମଙ୍ଗଳ ହେଉ । ତୁମେ ଯେଉଁଠି ବି' ଥାଅ ସୁଖରେ ଥାଅ ।

(ଶୋଇବାକୁ ଗଲା)

ପିଲାର ସ୍ୱର - Hello ବାପା : Happy Father's Day

ବାପା - (ହସି) Thank you My Child, I Love You So Much (ପୁଣି ହସିଲା) Happy Father's Day (ପୁଣି ହସିଲା) ସେଦିନର ସେଇ ଘଟଣା ପରେ .....ନା....ନା ସେଇ ଦୁର୍ଘଟଣା ପରେ ମୁଁ ଏକାନ୍ତରେ ବସି ସେଇ ଗୋଟିଏ କଥା ହିଁ ଭାବିଛି ଯେ କଥାରେ କହନ୍ତି- ବିନା କାରଣେ କାର୍ଯ୍ୟନାସ୍ତି । ତା'ହେଲେ ଏହି ଦୁର୍ଘଟଣା ପଛର କାହାଣୀ କ'ଣ ହୋଇପାରେ ? କିଏ ଦେବ ତା'ର ଉତ୍ତର ? ମୁଁ ନା ଇଶ୍ୱର ନା ସିଏ ? ମୁଁ କେମିତି ସେ ଉତ୍ତର ଦେଇ ପାରିବି କାରଣ ମୁଁ ତ ଆଜି ପର୍ଯ୍ୟନ୍ତ ସେ ଅତୁଆ ସୂତାର ଗୋଟିଏ ବି ଖିଅକୁ ଖୋଜି ପାଉନି ବାକି ଈଶ୍ୱରଙ୍କ କଥା । କେଜାଣି ସେ ବା କେମିତି ଜାଣିବେ ? କହନ୍ତି ପରା ନରକଥା ନାରାୟଣଙ୍କୁ ଅଗୋଚର । ନର କଥା ନାରାୟଣଙ୍କୁ ଯଦି ଆଗୋଚର ହୁଏ ତା'ହେଲେ ନାରୀ କଥା ବା ତାଙ୍କ ଗୋଚରକୁ ଆସିବ କେମିତି ? ବାକି ରହିଲା ତୁମ ମା । ସେହିଁ କେବଳ ଦେଇପାରିବେ ଏହାର ଉତ୍ତର । ଅବଶ୍ୟ ପରବର୍ତ୍ତୀ ସମୟରେ ମୋ ମନରେ ଆନ୍ଦୋଳିତ ହେଉଥିବା ଅନେକ ସନ୍ଦେହକୁ ଦୂର କରିବାକୁ ଯାଇ ମୁଁ ବେଳେ ବେଳେ ତୁମର ଏଇ ନିରିହ ଶିଶୁତ୍ୱର ସହାୟତା ନେବା କଥା ମଧ ଚିନ୍ତା କରିଛି । କେତେବେଳେ Police ଆଗରେ ଅଥବା କେତେବେଳେ Court ର କାଠଗଡ଼ାରେ ଠିଆ ହୋଇ ମୁଁ ଘୋଷଣା କରିବାକୁ ଚାହିଁଛି ଯେ My Lord ଏହା ଯୌତୁକ ନିର୍ଯ୍ୟାତନା ନୁହେଁ । ହୁଏ ତ ବା ପରକୀୟା ପ୍ରୀତି ହିଁ ଏଇ ବିବାହ ବିଚ୍ଛେଦର ମୂଳ କାରଣ ହୋଇଥାଇପାରେ । ଅତଏବ୍ ମାତୃ ଗର୍ଭରେ ସ୍ଥାପିତ ସେ ଭ୍ରୁଣ ସନ୍ତାନ "ପାଣ୍ଡବ" ବୋଲାଇପାରେ ମାତ୍ର ସେ "ପଣ୍ଡୁଜ" ନୁହେଁ । ଯେମିତି କୌଣସି ପାଣ୍ଡବ ପଣ୍ଡୁଜ ନଥିଲେ । ଏହା ସତ୍ୟ ସତ୍ୟ କିନ୍ତୁ ତ୍ରିବାର ସତ୍ୟ କରି ମୁଁ ହୁଏତ ଏକଥା କହିପାରିବି ନାହିଁ । ମାତ୍ର ଏହା ଅର୍ଦ୍ଧସତ୍ୟବିତ ହୋଇଥାଇପାରେ । କିନ୍ତୁ ଏ ଅଭିଯୋଗ ମୁଁ ଆଣିପାରିଲିନାହିଁ । କାରଣ ଯୌତୁକ ନିର୍ଯ୍ୟାତନାର ମିଥ୍ୟା ଅପବାଦ ଏହା ପୂର୍ବରୁ ମୋର ସାମାଜିକ ପ୍ରତିଷ୍ଠା ସହିତ ମୋର

ମାନ, ସମ୍ମାନ ଆଉ ମାନସିକ ସ୍ଥିତିକୁ ଦୋହଲାଇ ଦେଇଥିଲା। ସମାଜ ଆଖିରେ ମୁଁ ନୀଚମନା ହୋଇ ସାରିଥିଲି । ପୁଣିଥରେ ଆଇନ୍‌ର ଆଖିରେ ମିଥ୍ୟାବାଦୀ କିମ୍ବା ପୁରୁଷତ୍ୱହୀନ ମଣିଷ ହୋଇ ବଞ୍ଚିବାକୁ ଚାହୁଁନଥିଲି। ପିଲା ଦିନେ ବାଘ ଛେଳି ଖେଳ କେବେ ଖେଳିଛନ୍ତି ? ବାଘ ଛେଳି ଖେଳରେ ଯେମିତି ବେଳେବେଳେ ଦୁଇଦାନ ପଡ଼େ ସେଦିନ ମୁଁ ବି ସେମିତି ମୋ ଜୀବନ ଖେଳରେ ଏମିତି ଏକ ଦୁଇଦାନ ଭିତରେ ପୂରାପୁରି ଫସି ଯାଇଥିଲି। ଏପଟେ ଡ଼େଇଁଲେ ବାଘ ଖାଇବ ସେପଟେ ଡ଼େଇଁଲେ ବି ବାଘ ଖାଇବ। ଏପଟେ ଗୋ ହତ୍ୟା, ସେ ପଟେ ବ୍ରହ୍ମହତ୍ୟାର ଭୟ ମୋ ମନକୁ ଆନ୍ଦୋଳିତ କରୁଥିଲା। କାରଣ ମୁଁ ଏଇ ସତ୍ୟ ଘୋଷଣା କରିବାମାତ୍ରେ ମାନ୍ୟବର Court ଆମ ସ୍ୱାମୀ, ସ୍ତ୍ରୀଙ୍କର କଳି ଭିତରକୁ ତୁମ ଭଳି ଗୋଟିଏ ନିଷ୍ପାପ, ନିରୀହ ଶିଶୁକୁ ଟାଣି ଆଣିଥାନ୍ତା ଆଉ କହିଥାନ୍ତା, order, order, ଏ ପିଲାର D.N.A. Test କର । ଆଉ ସାତଦିନ ଭିତରେ Report ଦାଖଲ କର। ତା'ପରେ ଯାହା ଘଟିଥାନ୍ତା ତାହା କେବେବି ମୋ ପକ୍ଷରେ କିମ୍ବା ତୁମ ପକ୍ଷରେ ରୁଚିପୂର୍ଣ୍ଣ ହୋଇନଥାନ୍ତା। କାରଣ D.N.A Test ରେ ଯଦି ମୋର ବକ୍ତବ୍ୟ ମିଥ୍ୟା ପ୍ରମାଣିତ ହୋଇଥାନ୍ତା, ତା'ହେଲେ ଆଇନ୍ ଆଉ, ସମାଜ ମୋତେ ଜଣେ ଅଭ୍ୟାସଗତ ମିଥ୍ୟାବାଦୀର ଆଖ୍ୟା ଦେଇଥାନ୍ତା। ତା'ପରେ ମୁଁ ନିଜ ଆଖିରେ ନିଜେ ହିଁ ଘୃଣ୍ୟ ହୋଇ ଯାଇଥାନ୍ତି। ଆଉ ଯଦି ମୋ କଥା ସତ୍ୟ ବୋଲି ପ୍ରମାଣିତ ହୋଇଥାନ୍ତା ତାହେଲେ ତୁମକୁ ମିଳିଥାନ୍ତା ଜଣେ ଜାରଜ ସନ୍ତାନର ଉପାଧି। ଯାହା ମୋ ପିତୃପ୍ରାଣକୁ ଅଧିକ ମର୍ମାହତ କରିଥାନ୍ତା। ତେଣୁ "ସଖୀ ଲୋ ଆପଣା ମହତ ଆପେ ରଖି"ର ନ୍ୟାୟରେ ଚୁପ୍ ରହିବାକୁ ଉଚିତ୍ ମନେକଲି। ଭାବିଲି ମୋର ଏଇ ନିରବତାର ନିରୀହ ଭାଷାକୁ ହୁଏତ ବା କେହିଜଣେ ବୁଝିବାର ପ୍ରୟାସ କରିବ। ସମାଜ ନ ବୁଝୁ । ଆଇନ୍ ନ ବୁଝୁ ମୋର ପରୱା ନାହିଁ। କିନ୍ତୁ ସିଏତ ବୁଝିବ ନିଶ୍ଚୟ। ଯିଏ ମାସ ମାସ, ବର୍ଷ ବର୍ଷ ଧରି ଏଇ ଆଖିର ଭାଷାକୁ ବୁଝିଛି, ମନର କଥାକୁ ଶୁଣିଛି, ନିରବତାର ସ୍ୱରରେ କେତେବେଳେ ସାଗରର ବେଳାଭୂମିରେ ହାତରେ ହାତ ଥୋଇ ତ କେତେବେଳେ ମୋ କୋଳରେ ମଥା ଥୋଇ ନୀଳ ଆକାଶର ନୀଳିମାକୁ ଚାହିଁ ବିତେଇ ଦେଇଛି ରାତି ପରେ ରାତି (ଗୀତ) (ନିଦ ଭରାରାତି-ମଧୁଝରା ଜହ୍ନ) ସେତେବେଳର ସେଇ ବାଇଚଢ଼େଇ ଭଳି ସୁନ୍ଦର ଘର କରିବାର ସ୍ୱପ୍ନ ଏବେ ମଉଳି ଯାଇଛି। ପ୍ରେମର ବୈତରଣିରେ ଆଜି ଜୁଆର ନାହିଁ, ବାଲିଚର ପାଲଟି ଯାଇଛି, ଏବେ କିନ୍ତୁ ସେଇ ନଈ କୂଳରେ ଦେଖଣାହାରୀ ଅନେକ। ବିଭିନ୍ନ ଲୋକଙ୍କର ବିଭିନ୍ନ ମନ୍ତବ୍ୟ ଆଉ ସମାଲୋଚନା ମୋତେ ନୀରବ କରିଦେଇଛି। ପଥରର ମୂର୍ତ୍ତି ଭଳି ସ୍ତବ୍ଧ କରିଦେଇଛି। ମୁଁ ଏବେ ଜଣେ ଜୀବନ୍ତ ଶବ। ବଞ୍ଚିଛି ତେଣୁ ନିଶ୍ୱାସ ନେଉଛି। ହାରିଯିବାକୁ ଭଲପାଏନା ତେଣୁ କର୍ତ୍ତବ୍ୟ କରିଚାଲିଛି। ଭଗବତ ଗୀତାର ସେଇ ଶ୍ଲୋକ ଏବେ ମୋତେ ମୋର ବଂଚିବାର ରାହା ଦେଖାଉଛି।

"ଦୁଃଖେଷ୍ଟୁ ଅନୁଦ୍‌ବିଗ୍ନମନାଃ, ସୁଖେଷ୍ଟୁ ବିଗତ ସ୍ପୃହ"
ବୀତରାଗ, ଭୟକ୍ରୋଧ, ସ୍ଥିତଧି ର୍ମୁନିରଚ୍ୟତେ

ମୁଁ ଆଜିକାଲି କୌଣସି ସାଂସାରିକ ଉତ୍ସବରେ ଭାଗନେବାକୁ ଭଲ ପାଏନା ତେଣୁ, ଯାଏନା। ବିଶେଷତଃ ବିବାହ ଉତ୍ସବ ସବୁକୁ। ଦୁଇଟି କାରଣରୁ, ହୁଏତ କିଏ ମୋତେ ଦେଖି ଆହା, ଚୁ ଚୁ କରି ସମବେଦନା ଛଳରେ ନିନ୍ଦାଗାନ କରିବାର ସୁଯୋଗ ପାଇଯିବ। ଦ୍ୱିତୀୟତଃ ଆଉ କେହି କେହି ଅନ୍ଧବିଶ୍ୱାସୀ ମଣିଷ ମୋ ଉପସ୍ଥିତିକୁ ଅଶୁଭ ବୋଲି ମନେକରି କାଳେ କେଉଁ ମନ୍ତବ୍ୟ ଦେଇ ପକେଇବ ଯାହା ମୋତେ ଅପଦସ୍ତ କରିବ....ଇତ୍ୟାଦି। ମୋର ବ୍ୟକ୍ତିଗତ କାରଣ କିନ୍ତୁ ତା'ଠାରୁ ଅନେକ ଭିନ୍ନ ଏଇ ଯେମିତି

ବିବାହ ମଣ୍ଡପର ସାହାନାଇର ସ୍ୱର ଶୁଣିବାମାତ୍ରେ ମୋ ଭିତରେ ଶୁଣାଯାଏ ପ୍ରକୃତି କବି ଗଙ୍ଗାଧର ମେହେରଙ୍କର ସେଇ ଗୋଟିଏ ପଦ। "ପର ପ୍ରେମ ଦେଖି ନିଜ ପ୍ରେମ ସଦା ହୋଇଥାଏ ଆନ୍ଦୋଳିତ"। ନବ ବିବାହିତ ବର କନ୍ୟାଙ୍କୁ ଦେଖିବା ମାତ୍ରେ ମୋ ଭିତରେ ଲୁଚି ରହିଥିବା ଅତୀତର ଅନୁଭୁତି ସବୁ ଆପେ ଆପେ ଅଙ୍କୁରିତ ହୋଇଉଠେ। ସମସ୍ତଙ୍କ ଅଜାଣତରେ ମୋର ମନ ରୋମାଞ୍ଚିତ ହୋଇଯାଏ କିଛି ସମୟ ପାଇଁ ମୁଁ ଫେରିଯାଏ କେଉଁ ଏକ ଅଜଣା ରାଇଜକୁ (ଗୀତ) (ରୂପା ଶଗଡିରେ, ସୁନା କନିଆଁ) ପର ମୁହୂର୍ତ୍ତରେ କିଏ ଯେମିତି ମୋତେ ସାବଧାନ କରିଦିଏ। ସନ୍ଦେହର ଅବଗଣନା ତାର ଅକ୍ଟୋପାସି ଜାଲରେ ମୋ ମନକୁ ବାନ୍ଧିପକାଏ। ମନେହୁଏ ବିବାହର ଏଇ ଆନନ୍ଦ ଉତ୍ସବ, ପ୍ରତାରଣାର ଏକ ମିଛି ମିଛି କା ଧୂଳି ଖେଳ ନୁହେଁ ତ ? ବିବାହର ଏଇ ସାହାନାଇର ସ୍ୱର ଆସନ୍ତାକାଲି କେଉଁ ଏକ ବିରହୀ ଚକୋରୀର ଗୁମୁରୀ ଗୁମୁରୀ ଗାଉଥିବା ଏକାନ୍ତ ବିଳାପର ସ୍ୱରଲିପି ନୁହେଁ ତ ? ହେ ! ଇଶ୍ୱର, ଏମାନଙ୍କୁ ସେ ଯନ୍ତ୍ରଣାରୁ ମୁକ୍ତକର।

ପ୍ରୟୋଜନ ହେଲେ ସାରା ପୃଥିବୀର ନୀର୍ଯ୍ୟାତନାର ଏ ବିଷକୁ ମୋ ହାତରେ ଡୋଳିଦିଅ ପଛେ ହେଲେ କାହାକୁ ଏମିତି ଯନ୍ତ୍ରଣା ଆଉ ଦିଅନା। ସର୍ବେ ଭବନ୍ତୁ ସୁଖିନଃ ସର୍ବେସ୍ୟନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାଗଭବେତ୍। କୌଣସି ନିର୍ଦ୍ଦୋଷ ନିର୍ଯ୍ୟାତିତ ପୁରୁଷମାନଙ୍କୁ ପିତୃତ୍ୱର ସୁଖରୁ କେବେବି ବଞ୍ଚିତ କର ନାହିଁ ପ୍ରଭୋ। ସେ ସମସ୍ତ ବିଷ ମୁଁ ପଛେ ପିଇଯିବାକୁ ପ୍ରସ୍ତୁତ ଅଛି। (କାନ୍ଦିଲା) ପିତୃତ୍ୱର ଅଧିକାର ରୁ ମୋତେ ମଧ୍ୟ ବିଚ୍ୟୁତ କରନ୍ତୁ ନାହିଁ (Court ର Secene) Order...Order ମୁଁ ଥାଉଁ ଥାଉଁ ନିଜକୁ ନିର୍ଦ୍ଦୋଷ ବୋଲି ଘୋଷଣା କରିବାକୁ ସାହସ କରୁଛ କିପରି ? ତୁମେ କ'ଣ ଜାଣିନ ଯେ ଏହା ପୂର୍ବରୁ କେତେ କେତେ ଆତ୍ମଘୋଷିତ ବାବା ଆଉ ଆତ୍ମଘୋଷିତ ଗୁରୁ ନିଜକୁ ନିର୍ଦ୍ଦୋଷ ବୋଲି ଘୋଷଣା କରି ମଧ୍ୟ ନିଜର କୃତକର୍ମ ପାଇଁ ଏବେ ଜେଲ୍‌ର ଚାରି କାନ୍ଥ ଭିତରେ ବନ୍ଦୀର ଜୀବନ ବିତାଉଛନ୍ତି।

କ୍ଷମା My Lord କ୍ଷମା, ନିଜକୁ ନିର୍ଦ୍ଦୋଷ ବୋଲି କହିବା ତ କାହାରି ଅପରାଧ ନୁହେଁ। ଭୁଲ ନୁହେଁ। ଆପଣପରା ନିଜେ କହିଛନ୍ତି ଯେକୌଣସି ଅଭିଯୁକ୍ତର ଦୋଷ ପ୍ରମାଣିତ ନ ହେବା ପର୍ଯ୍ୟନ୍ତ ତାକୁ ଦୋଷୀ ବୋଲି କୁହାଯାଇ ପାରିବନାହିଁ। ତା'ହେଲେ ମୁଁ ନିର୍ଦ୍ଦୋଷ ବୋଲି କହିବାରେ ଅପରାଧ ରହିଲା କେଉଁଠି। ଦୀର୍ଘ ୧୫ ବର୍ଷ ଧରି ମୁଁ ଜଣେ ଅଭିଯୁକ୍ତ ହୋଇପାରେ ମାତ୍ର ଯେ ପର୍ଯ୍ୟନ୍ତ ଆପଣଙ୍କର ଆଇନ୍ ମୋତେ ଦୋଷୀ ବୋଲି ସାବ୍ୟସ୍ତ କରିନପାରିଛି ସେ ପର୍ଯ୍ୟନ୍ତ ନିଜକୁ ନିର୍ଦ୍ଦୋଷ ବୋଲି ଘୋଷଣା କରିବାର ସତ୍‌ସାହାସ ମୋର ଅଛି। ସେଥିରୁ ମୋତେ କେହି ବି ବଞ୍ଚିତ କରିପାରିବେନାହିଁ। ମୁଁ କ'ଣ ମିଛ କହୁଛି ?..... My Lord?

ମୁଁ ଜାଣେ ଯେ ଆଇନ୍ କେବେ ଆଇନ୍‌ର ଅମର୍ଯ୍ୟାଦା କରେନାହିଁ। ତେବେ ଏକଥାବି ଶୁଣିଛି ଯେ ଆଇନ୍‌ର ଗଳାବାଟ ଅନେକ। ସେଇଥିପାଇଁ ଏହି ସମାଜର ..... କେହି କେହି....ଶିକ୍ଷିତ ମଣିଷ ଆଇ ବୁଦ୍ଧିଜିବୀ ଏକଥା ବି କହିବାର ଶୁଣାଯାଏ......ଯେ ଆଇନ୍ କେବଳ ବଡ଼ଲୋକଙ୍କ ପାଇଁ, ନେତାମାନଙ୍କ ପାଇଁ..... ଉପର ମହଲାର ମଣିଷମାନଙ୍କପାଇଁ, ଗରିବ, ସାଧାରଣ ମଣିଷଙ୍କ ପାଇଁ ଆଇନ୍‌ଟା କାଳେ "ଆକାଶ କଇଁଆକୁ ଚିଲିକା ମାଛ ଭଳି" ଏହା କ'ଣ ସତ୍ୟ ? ... କୁହନ୍ତୁ ? ..... ଉତ୍ତର ଦିଅନ୍ତୁ ?.... ନିରବ ରହିଲେ କାହିଁକି ? ମୁଁ ଜାଣେ ଏହାର ଉତ୍ତର ମିଳିବା ଏତେ ସହଜ ନୁହେଁ।

ଏଇ ପ୍ରଶ୍ନର ଉତ୍ତର ପାଇବା ପାଇଁ ମୁଁ ଗତ ୧୫ ବର୍ଷ ଭିତରେ ଅନେକ ବୁଦ୍ଧିଜୀବିଙ୍କ ଦ୍ୱାରସ୍ଥ ହୋଇଛି।

ବିଭିନ୍ନ କ୍ଷେତ୍ରର ବୁଦ୍ଧିଜୀବି ଭିନ୍ନ ଭିନ୍ନ ଉତ୍ତର ଦେଇଛନ୍ତି। ଅଧିକାଂଶ ବୁଦ୍ଧିଜୀବି ତ ନିରବତାରେ ହିଁ ସେମାନଙ୍କର ଉତ୍ତର କହିବାକୁ ଉଚିତ୍ ମଣିଛନ୍ତି ଏଇ ଯେମିତି ଅନେକ କହନ୍ତି..... "ସବସେ ନୀରବ ଭଲା"। ଆଉ କେହି କେହି କହନ୍ତି "ଘୋଡ଼୍ କମ୍ବଲ ପଡ଼େ ରହୋ, ଉପର ଉପର ଜାନେ ଦୋ" କିନ୍ତୁ କାହିଁକି? ୧+୧=୨ ଯଦି ହୁଏ ତାହେଲେ ତାକୁ ସ୍ୱୀକାର କରିବାକୁ ସମସ୍ତେ କୁଣ୍ଠିତ କାହିଁକି? ବୋଧହୁଏ ସେଇ ଗଳିପଥ ଅଛି ବୋଲି। ଆପଣ ପରା କହିଛନ୍ତି, ଯେ ଶହେ ଦୋଷୀ ପଛେ ମୁକ୍ତ ହୋଇଯାଆନ୍ତୁ, ମାତ୍ର ଜଣେ ନିର୍ଦ୍ଦୋଷ ଯେମିତି ଦଣ୍ଡ ନପାଉ....। ଖୁବ୍ ସୁନ୍ଦର ସିଦ୍ଧାନ୍ତ ସତ...ମାତ୍ର ଶତପ୍ରତିଶତ ସତ୍ୟ ବୋଲି ତାହା ପ୍ରମାଣିତ ହୋଇପାରିନି। ତେଣୁ ପ୍ରକୃତ ଦୋଷୀମାନଙ୍କ ସହିତ ବେଳେବେଳେ ନିର୍ଦ୍ଧନ, ଅସହାୟ, ସରଳ ମଣିଷଟିଏ ନିର୍ଦ୍ଦୋଷ ହୋଇ ମଧ୍ୟ ଦୋଷି ସାବ୍ୟସ୍ତ ହେଉଛି। ଯେମିତି ମୁଁ-।

ହେ ମହାମାନ୍ୟା, ଆଇନ୍‌ର ଦେବୀ! ଆପଣଙ୍କୁ ମୁଁ ଯଦି ନ୍ୟାୟର ଜନନୀ ବୋଲି ସମ୍ବୋଧନ କରିବାକୁ ଚାହେଁ....ତାହେଲେ ଆପତ୍ତି କରିବେ ନାହିଁ ତ?

ଆଇନଦେବୀର କଣ୍ଠସ୍ୱର - ଆପତ୍ତି କରିବି କାହିଁକି? ଏ ପୃଥିବୀରେ ଏମିତି କିଏ ନାରୀ ଅଛି ଯିଏ କି "ମା" ଡ଼ାକ ଶୁଣିବାକୁ ଉତ୍କଣ୍ଠିତ ନୁହେଁ? ତେବେ ହଁ ତୁମେ ମୋତେ "ମା" ଡ଼ାକ ଅବା "ମାଉସୀ" ମୋ ନିକଟରୁ କେବେ ପକ୍ଷପାତ ଆଶା କରିବନାହିଁ। କାରଣ ମୋ ଦୃଷ୍ଟିରେ ପୁତ୍ର ଅବା ପୌତ୍ର, ଶତ୍ରୁ ଅବା ମିତ୍ର, ନାରୀ ଅବା ଅର୍ଦ୍ଧନାରୀ, ମଣିଷ ଅବା ପଶୁ ସମସ୍ତେ ସମାନ୍। ମୋର ସେଇ ଗୋଟିଏ ଉକ୍ତି- "ଅକ୍ଷୟ ହେଉ ନ୍ୟାୟ ଜଗତେ, ସତ୍ୟର ହେଉ ଜୟ।"

ବାପା - ଠିକ୍ ଠିକ୍ ଆପଣ ଠିକ୍ କହିଛନ୍ତି ମାତା। ଏମିତି ଜଣେ ମାଆର ସ୍ୱର ଏ ସଭ୍ୟତା ବି ଦିନେ ଶୁଣିଥିଲା ଆଉଜଣେ ମାତାଙ୍କ ମୁଖରୁ। "ଯାଅ ବୀର ରଣେ ଦେଉଛି ମେଲାଣି, ନକର ଦୁଃଖ ଭୟ, ଅକ୍ଷୟ ହେଉ ପୁଣ୍ୟ ଜଗତେ, ଧର୍ମର ହେଉ ଜୟ"। ସେ କେଉଁ ଦ୍ୱାପର ଯୁଗର କଥା। ଆଜି ଏଇ କଳି ଯୁଗରେ ମଧ୍ୟ ଧର୍ମର ଜୟଗାନ କରିବାପାଇଁ ତାଙ୍କରି ଉଦାହରଣ ଦିଆଯାଏ। ମାତା ଗାନ୍ଧାରୀ। ଆପଣତ ସହଜେ ନ୍ୟାୟର ପ୍ରତିମୂର୍ତ୍ତି, ସତ୍ୟର ଅଧିଷ୍ଠାତ୍ରୀ ଦେବୀ। କିନ୍ତୁ କ୍ଷମା କରିବେ ମାତା! ଆପଣ ଦୁହିଁଙ୍କ ମଧ୍ୟରେ ମୁଁ ଦେଖିଛି ଆଉ ଏକ ସାମଞ୍ଜସ୍ୟ। ଅନ୍ଧପୁତୁଳିର ଏଇ ପଟି। ଯାହା ସେଦିନ ପିନ୍ଧିଥିଲେ ସିଏ, ନିଜର ପତିବ୍ରତା ଧର୍ମର ପାଳନ କରିବାଲାଗି। ପଣ୍ଡିତେ କହନ୍ତି ତାହାହିଁଥିଲା କୌରବ ବଂଶ ଧ୍ୱଂସର ଅନ୍ୟତମ ଏକ ବଳିଷ୍ଠ କାରଣ। ଆଖି ଥାଉଁ ଥାଉଁ ଆଖିରେ ନ ଦେଖି କେବଳ କାନକୁହା କଥା ଉପରେ ବିଶ୍ୱାସ ଓ ଭରଷା କରି ଅସତ୍ୟକୁ ସତ୍ୟ ବୋଲି ନିଶ୍ଚେ ଧରିନେଇଥିଲେ ସିଏ। ତାହା ହିଁ ଥିଲା ବୋଧହୁଏ କୁରୁ ବଂଶ ଧ୍ୱଂସର ପ୍ରଧାନ କାରଣ। କାରଣ କଥାର ଚତୁରୀ ଅତି ଭୟଙ୍କର। କଥାରେ କଥାରେ ଚତୁରୀ ଫୁଟାଇ ଅସତ୍ୟକୁ ସତ୍ୟଭାବେ ଉଦ୍‌ଭାସିତ କରାଇବା ଏକ ଭିନ୍ନ କଳା ଆଉ ସେଇ କଳାରେ ନିପୁଣଥିବା ବ୍ୟକ୍ତିମାନେ ହିଁ ବୋଧହୁଏ ପେଶାରେ ଓକିଲ ଯିଏ ଯେତେ ବାକ୍‌ପଟୁ ସିଏ ସେତେ ପାରଙ୍ଗମ। ଏବେ ପୁଣି ସେଇ ଅନ୍ଧ ପୁତୁଳି ସଂଯୋଗ କ୍ରମେ ଆପଣଙ୍କ ଆଖିରେ ବିଦ୍ୟମାନ। ଆଉ ଆପଣଙ୍କ ଚାରିପଟେ ବାକ୍‌ପଟୁ ଓକିଲ ମାନଙ୍କର ଭିଡ। ଆପଣ ହୁଏତ କହିପାରନ୍ତି ଯେ ଖାଲି ଆଖିରେ ଯାହାସବୁ ଦେଖାଯାଏ ସବୁ କ'ଣ ସତ୍ୟ? ମୁଁ ଜାଣେ ଆପଣ ସେଇ କଥା ହିଁ କହିବେ। କହିବା ସ୍ୱାଭାବିକ୍। ଯେମିତି କି ମରିଚିକା । ଆଗେ ମରୁଭୂମିରେ ଦେଖାଯାଉଥିଲା। ଏବେ ତ ତାହା ଗ୍ରୀଷ୍ମଋତୁରେ ରାଜ ରାସ୍ତାରେ ମଧ୍ୟ

ମାଧ୍ୟାହ୍ନରେ ଗାଡି ଚଲେଇ ଗଲାବେଳେ ପାଣିର ଭ୍ରମ ସୃଷ୍ଟି କଲାଣି। ଠିକ୍ ଯେମିତି ଜହ୍ନ ଆଲୁଅର ତିଳ ତଣ୍ଡୁଳ ଛାଇରେ ପାଳ ଦଉଡ଼ି ବି ପଥିକ ମନରେ ସର୍ପର ଭ୍ରମ ସୃଷ୍ଟିକରେ। ତେଣୁ ଯାହା ପୁଅକୁ ସାପ କାମୁଡ଼େ ତା'ମା ପାଳ ଦଉଡ଼ି ଦେଖିଲେ ବି ବେଳେବେଳେ ସାପ ସାପ ବୋଲି ପାଟିକରି ଉଠେ। ଯାହା ସ୍ୱାଭାବିକ। ଯେମିତି ଏବେ ମୁଁ ଅନ୍ୟାୟ ଅନ୍ୟାୟ ବୋଲି ଚିତ୍କାର କରୁଛି। ମୋ ପ୍ରତି ଅନ୍ୟାୟ ହେଉଛି। ମୋ ସନ୍ତାନ ପ୍ରତି ଅନ୍ୟାୟ ଅନ୍ୟାୟ....। କିନ୍ତୁ (ଗୀତ) ।

ଆଇନଦେବୀର
କଣ୍ଠସ୍ୱର - କିନ୍ତୁ, ପରନ୍ତୁ, ତଥାପିର, ଇନ୍ଦ୍ରଜାଲ ଛାଡ଼। ସ୍ପଷ୍ଟକରି କୁହ । କ'ଣ ତୁମେ କହିବାକୁ ଚାହଁ?

ବାପା - ମୁଁ କହିବାକୁ ଚାହେଁ ଗୋଟିଏ ଉଦାହରଣ। ସତ୍ୟ କିମ୍ୱା ଗଳ୍ପ ଜାଣେନା । ଜଣେ ଓକିଲ ବନ୍ଧୁଙ୍କ ନିକଟରୁ ଶୁଣିଥିଲି, ଯଦିଓ ସେ କହିଥିଲେ ଯେ ସେଥିଲେ ତାର ପ୍ରତ୍ୟକ୍ଷଦର୍ଶୀ। ତଥାପି ।

ଆଇନଦେବୀର
କଣ୍ଠସ୍ୱର - ପୁଣି ତଥାପି। ଆଗ କୁହ ସେ ଉଦାହରଣଟି କ'ଣ?

ବାପା - ଯାଜପୁର ଜିଲ୍ଲାର କୌଣସି ଏକ କ୍ରିମିନାଲ୍ କୋର୍ଟର ଗୋଟିଏ Case । ରାମିଆ ମର୍ଡ଼ର କେଶ । ଅଭିଯୁକ୍ତ ଜଣେ ଦିନ ମଜୁରିଆ ଏବଂ ମୁଦାଲା ଜଣେ ଜମିଦାର ଶ୍ରେଣୀୟ ବ୍ୟକ୍ତି। ତାଙ୍କର ଅଭିଯୋଗ ଯେ ଅଭିଯୁକ୍ତ ତାଙ୍କ ରାମିଆକୁ ହତ୍ୟା କରିଛି। ତେଣୁ ତାକୁ ମୃତ୍ୟୁ ଦଣ୍ଡ ମିଳିବା ଆବଶ୍ୟକ। ଜବାବସୁଆଲ ଶୁଣିବାକୁ ସେଦିନ କୋର୍ଟରେ ପ୍ରବଳ ଭିଡ଼। ମୁଦାଲା ପକ୍ଷରୁ ସାକ୍ଷୀ ଦେବାକୁ ଥିବା ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ବ୍ୟକ୍ତିଟି ଅସୁସ୍ଥତା କାରଣରୁ କୋର୍ଟ ଆସିବା ସମ୍ଭବ ହୋଇପାରିଲାନାହିଁ। ଫଳରେ କରିତ୍‌କର୍ମା ଓକିଲ ଜଣଙ୍କ ଜଣେ ପେଶାଦାର ସାକ୍ଷୀଙ୍କ ଯୋଗାଡ଼ କରିଦେଲେ। ହଁ ଆଜ୍ଞା, ଜଣେ ପେଶାଦାର ସାକ୍ଷୀ, ଯାହାଙ୍କ ପାରିଶ୍ରମିକ ମଧ ବରଗଛ ଦେହରେ ଲାଗିଥିବା କଣ୍ଟାରେ ଲେଖାହୋଇ ଝୁଲାଯାଇଛି। ଲୋକେ କହନ୍ତି ସେଇଟା ହିଁ କାଳେ ତାଙ୍କ ପେଶା, ଆଉ ତାଙ୍କ ଜୀବନଜୀବିକା। ଅଭିଯୁକ୍ତଙ୍କ ପକ୍ଷରୁ ସରକାରୀ ଓକିଲ ଯେତେବେଳେ କାଠଗଡ଼ାରେ ତାଙ୍କୁ ଶପଥ ପାଠ କରାଇଲେ ସେ ଅନାବିଳ ଭାବେ ଶପଥପାଠ କରି କହିଲେ ।

ସାକ୍ଷୀ - "ହଜୁର ଯାହା କହିବି ସତ କହିବି, ସତ ବ୍ୟତୀତ ଆଉ କିଛି କହିବି ନାହିଁ"।

ବାପା - କିନ୍ତୁ ତା'ପରେ ଯାହା ସିଏ କହିଲେ ସବୁ ମିଥ୍ୟା। ଏପରିକି ନିଜର ନାମ, ଗାଁର ନାମ, ପିତାଙ୍କ ନାମ, ଆଦି ସବୁ କେବଳ ମିଥ୍ୟା... ମିଥ୍ୟା ଆଉ ମିଥ୍ୟା।
ସରକାରୀ ଓକିଲ ପ୍ରଶ୍ନକଲେ ଏଇ ଅଭିଯୁକ୍ତଙ୍କୁ ଚିହ୍ନିଛ?

ସାକ୍ଷୀ - ହିଁ ଆଜ୍ଞା! ଇଏ ମକରା ଆଜ୍ଞା । ମୋରି ଆଖି ଆଗରେ ରାମିଆକୁ ଏମିତି ଛୁରି ଭୁସି ମାରିଦେଲା।

ସରକାରୀ
ଓକିଲ - ଆଚ୍ଛା ରାମିଆର ଉଚ୍ଚତା କେତେ ଥିଲା?

ସାକ୍ଷୀ - ହାତ ଦେଖାଇ କହିଲେ ହଜୁର ଏତିକି ହେବ। (ପାଖାପାଖି ୫ ଫୁଟ)
ସାରା କୋଠରୀରେ ହସର ଢ଼େଉ ଖେଳିଗଲା। ସରକାରୀ ଓକିଲ ବି' ହସି ଉଠିଲେ। ହୁଏତ ସେ ହସ ଥିଲା ବିଜୟର ହସ। କହିଲେ Point to be noted my Lord, ରାମିଆ ବୋଲି ସେଇ କୁକୁଡ଼ାର ଉଚ୍ଚତା କେବେବି ୫ ଫୁଟ ହୋଇନପାରେ। ପୁଣି ହସର ଲହଡ଼ି ଭିତରେ ଜଜ୍ ସାହେବଙ୍କ ପାଟି ଶୁଣାଗଲା Order Order, Keep Quite.....

ପେସାଗତ ସାକ୍ଷୀ ହଠାତ୍ କହିଉଠିଲେ My Lord ଏ ପର୍ଯ୍ୟନ୍ତ ମୁଁ କେବଳ ମୋର ଡ଼ାହାଣ ହାତଟି ଦେଖାଇଛି। ମୋ ବାମ ହାତକୁ ଦେଖାଇବା ପର୍ଯ୍ୟନ୍ତ ଅପେକ୍ଷା ନକରି ସରକାରୀ ଓକିଲ ମହାଶୟ ଏମିତି ମନ୍ତବ୍ୟ ଦେବା ଆଦୌ ଠିକ୍ ନୁହେଁ। ବୋଧହୁଏ ଘରକୁ ଯିବାକୁ ସେ ତର୍‌ତର ହେଲେଣି। ପୁଣି ହସ ଭିତରେ ସେ ନିଜର ବାମ ହାତଟିକୁ ଡ଼ାହାଣ ହାତର ତଳକୁ ଆଣି କହିଲେ ହଜୁର ଆଜ୍ଞା, ରାମିଆର ଉଚ୍ଚତା ଥିଲା ପ୍ରାୟ ଏତିକି ? (ଫୁଟେ ପାଖାପାଖି) କ୍ଷଣିକ ପାଇଁ କୋର୍ଟ ପୂରା ନିସ୍ତବ୍ଧ ହୋଇଗଲା। ଜବାବସୁଆଲ ସରିଲା। ନିର୍ଦ୍ଦୋଷ ମକରାକୁ ଦଣ୍ଡ ହେଲା। ଯଦି ଏହାସତ୍ୟ ହୋଇଥାଏ ତା'ହେଲେ ତ ସାଙ୍ଘାତିକ ନିଶ୍ଚୟ।

ଜଜଙ୍କ କଣ୍ଠ – Order Order- ଏହାକୁ ଏକ ଗଳ୍ପର ଆଖ୍ୟା ଦିଆଯାଇପାରେ ମାତ୍ର ସତ୍ୟ ନୁହେଁ। ଆଉ ଯଦିବା ସତ୍ୟ ହୋଇଥାଏ, ତାହେଲେ ମଧ୍ୟ Exception cannot stand as example.

ଆପଣଙ୍କର ଉକ୍ତି ଶିରୋଧାର୍ଯ୍ୟ। ତଥାପି ଆଇନର ପରିସର ମଧ୍ୟରେ ଏପରି ଦୃଷ୍ଟାନ୍ତ ମଧ୍ୟ ନ ରହିବା ଉଚିତ୍। ଛାଡ଼ନ୍ତୁ ସେ କଥା.... ଏଥର ମୁଁ ଆଉ ଏକ ସତ୍ୟର ଅବତାରଣା କରିବାକୁ ଚାହୁଁଛି My Lord ସେ ଦିନ ଥିଲା ଶିଶୁଦିବସ ଆହତ ପିତୃତ୍ୱର ହୃଦୟ ନେଇ ମୁଁ ମୋ ବ୍ୟାଗରେ ସେଦିନ ଭର୍ତ୍ତିକଲି ବେଶ କିଛି ଚକୋଲେଟ୍ ଆଉ ଶୁଖିଲା ଖାଦ୍ୟଦ୍ରବ୍ୟ ଆଉ ପହଞ୍ଚିଗଲି ଯାଇ ରେଲୱେ ଷ୍ଟେସନ୍ ପାଖରେ ଥିବା ବସ୍ତି ନିକଟରେ। କିନ୍ତୁ ସେଠି କୌଣସି ପିଲାମାନଙ୍କୁ ଦେଖିବାକୁ ପାଇଲିନାହିଁ। ପଚାରି ଦେଲି, ପିଲାମାନେ ଦେଖାଯାଉ ନାହାଁନ୍ତି ? କୁଆଡ଼େ ଗଲେ ? ଉତ୍ତର ଆସିଲା କାମକୁ ବାହାରି ଗଲେଣି। ମୁଁ ପଚାରିଲି କ'ଣ ସ୍କୁଲକୁ କିନ୍ତୁ ଆଜିତ ସ୍କୁଲ ଛୁଟିଥିବ । ନା ନା Observation Day ହୋଇଥିବ... କେହି ଜଣେ କହିଲା। ସେଥିରୁ ତୁମକୁ କ'ଣ ଦରକାର ? ଅନ୍ୟମନସ୍କ ଭାବେ ସେଠାରୁ ବାହାରି ଆସୁ ଆସୁ ଅଳ୍ପ ଦୂରରେ ଦେଖିଲି Dump yard ପାଖରେ କିଛି କୁନି କୁନି ପିଲା ସେଇ ଅଳିଆ ନର୍ଦ୍ଦମା ଗଦା ଭିତରେ ପଶି ଜରି ବୋତଲ ଗୋଟେଇବାରେ ବ୍ୟସ୍ତ। ଗାଡ଼ିଟିକୁ ରାସ୍ତା ଉପରେ ଥୋଇ ସେମାନଙ୍କର ପାଖକୁ ଗଲି ତାଙ୍କୁ ଚକୋଲେଟ୍ ଦେଲି, ସେମାନେ ଖୁବ୍ ଖୁସି ହୋଇ ଖାଇଲେ। ତା'ଭିତରୁ ଜଣେ ନିକଟରେ ଥିବା ଗୋଟିଏ ବରଗଛ ଆଡ଼େ ଧାଇଁ ଗଲା, ଆସି କହିଲା। ଭାଇ ହେରିକା ନିଶାଖାଇ ଶୋଇ ପଡ଼ିଛନ୍ତି। ତାଙ୍କ ଚକୋଲେଟ୍ ସବୁ ମୋତେ ଦିଅ, ସେମାନେ ଉଠିଲେ ତାଙ୍କୁ ଦେଇ ଦେବି। ନିଶାଖାଇ ଶୋଇ ପଡ଼ିଛନ୍ତି ? ଆଶ୍ଚର୍ଯ୍ୟ ଲାଗିଲା। ସେମାନଙ୍କ ପାଖରେ ଯାଇ ପହଞ୍ଚିଲି। ମୋ ସାଙ୍ଗରେ ସବୁପିଲାବି ଗଲେ। ଦେଖିଲି ୪/୫ ଜଣ ପିଲା ବୟସ ୧୨ରୁ ୧୪ ବର୍ଷ ଭିତରେ ହେବ ଅଚେତ୍ ହୋଇ ଶୋଇଛନ୍ତି। ପାଟିରୁ ଲାଳ ଗଡ଼ିଆସିଛି, ସେଥିରେ ମାଛି ଭଣ ଭଣ ହେଉଛନ୍ତି। ଆରେ ଏମାନଙ୍କ ଦେହରେ ଜୀବନ ଅଛି ତ ? ନାକରେ ହାତଦେଲି ନିଶ୍ୱାସ ଚାଲିଛି ତାଙ୍କ ପାଖରେ ପଡ଼ିଛି କିଛି ରଙ୍ଗ ଡ଼ବା ଓ ଅଠା ବୋତଲ। ଏମାନେ କ'ଣ ତାକୁହିଁ ପିଇ ନିଶାରେ ଶୋଇ ପଡ଼ିଛନ୍ତି ? ଏମାନେ ପରା ଏ ଦେଶର ଭବିଷ୍ୟତ ? ଏମାନେ ହିଁ ବଡ଼ ହେଲେ କ'ଣ ଏ ଦେଶକୁ ଗଢ଼ିବେ ? ସମାଜକୁ ମାର୍ଗଦର୍ଶନ ଦେବେ ? କ'ଣ ଏମାନଙ୍କ ଜୀବନ.... ଏମାନେ କ'ଣ ମଣିଷ ଛୁଆନା ଘୁଷୁରି କୁକୁର ଭଳି ପଶୁମାନଙ୍କର ଛୁଆ ? ଧନ୍ୟ ଏମାନଙ୍କର ବାପା ମାଆ ଆଉ ଧନ୍ୟ ଏ ଦେଶର ଶିଶୁ ଅଧିକାର ଆଇନ ? ଏମାନଙ୍କୁ ତାଙ୍କର ନ୍ୟାର୍ଯ୍ୟ ଅଧିକାର ଦେବ କିଏ ? ପିତାମାତା ନା.....ସରକାର,......ନା ଆଇନ୍ ? My Lord.....? (ନିରବତା) ମୁଁ ଜାଣେ ଏକଥା କାହାକୁ ଶୁଣାଯିବନି। ତା'ହେଲେ ଏହାର ଉତ୍ତର ଦେବ କିଏ ? କିଏ ନେବ ଏମାନଙ୍କ ଉତ୍ତର ଦାୟିତ୍ୱ ? ସେଇ କଥା ଭାବୁଭାବୁ ମୁଁ ଅନ୍ୟମନସ୍କ ହୋଇପଡ଼ିଛି। ହଠାତ୍ କିଛି

ଲୋକଙ୍କର ପାଟି ତୁଣ୍ଡ ଶୁଣି ମୋର ଧ୍ୟାନ ଭଙ୍ଗହେଲା। ସେମାନଙ୍କ ଅଭିଯୋଗ ଯେ, ମୁଁ ଜଣେ ପିଲାଚୋର। ଚକୋଲେଟ୍ ଖୁଆଇ ତାଙ୍କ ପିଲାଙ୍କୁ ଚୋରି କରିବାକୁ ଆସିଛି। ତାଙ୍କୁ ମୁଁ ଯେତେ ବୁଝାଇବାକୁ ଚେଷ୍ଟା କଲି ସେମାନେ ସେତେ ଉତ୍ତ୍ୟକ୍ତ ହେବାକୁ ଲାଗିଲେ ବାଧ ହୋଇ ମୁଁ ୧୦୦ ନମ୍ବରକୁ Phone କଲି। Hello PCR Please Help...me....Railway Station Dump Yard ପାଖରେ। Police ର P.C.R Van ଆସି ମୋତେ ଉଦ୍ଧାର କଲା। ଥାନାକୁ ନେଇ Police ମୋତେ ଉତ୍ତମ ମଧ୍ୟମ କରି ଶୁଣେଇଲା।

ପୋଲିସ - ଦାନ କରିବାର ଯଦି ଏତେ ଇଛା କୌଣସି ସଂସ୍ଥା ବା ପ୍ରତିଷ୍ଠାନକୁ ଯାଇ ଦାନ କରନ୍ତୁ। ଏମିତି ରାସ୍ତା ଘାଟରେ ବାତ୍ସଲ୍ୟ ପ୍ରେମ ଦେଖାଇଲେ। ଜନତାର କ୍ରୋଧର ଶିକାର ହେବେ। ଜୀବନ ବି ଯାଇପାରେ।

ବାପା - ଠିକ୍ କଥା । ସେ କଥା ପ୍ରତି ମୋର ଧ୍ୟାନ ନଥିଲା। ତା'ପରେ ମୁଁ ସତର୍କ ହୋଇଗଲି। କିନ୍ତୁ ମନଭିତରେ ସେଇ ପ୍ରଶ୍ନ ଅଧିକରୁ ଅଧିକ ଭାବେ ମୋତେ ଆନ୍ଦୋଳିତ କଲା। ଏମାନଙ୍କ ଶିକ୍ଷା, ଏମାନଙ୍କର ବାତ୍ସଲ୍ୟ, ଏମାନଙ୍କର ଭବିଷ୍ୟତର ଉତ୍ତର ଦାୟିତ୍ୱ ନେବ କିଏ ? ଯଦି ଏମାନଙ୍କର ଦାୟିତ୍ୱ ନେବାପାଇଁ କେହିବି ତତ୍ପର ନାହାଁନ୍ତି, ତାହେଲେ ସେମାନଙ୍କ ଜନ୍ମକୁ ନିୟନ୍ତ୍ରଣ କରାଯାଉ। ଦେଶର ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ସହିତ, Foot Path ଆଉ ବସ୍ତିରେ ଜନ୍ମକୁ ନିୟନ୍ତ୍ରଣ କରିବା ମଧ୍ୟ ଏକାନ୍ତ ଜରୁରୀ। ଏବଂ ଏଥିପାଇଁ ସରକାର ଏବଂ ଆଇନ୍ ଯଥେଷ୍ଟ ତତ୍ପର ହେବା ଦରକାର। କାରଣ ରାସ୍ତାରେ ବୁଲା କୁକୁରଙ୍କ ବନ୍ଧ୍ୟାକରଣ ପାଇଁ ସରକାର କୋଟି କୋଟି ଟଙ୍କା ଖର୍ଚ୍ଚ ଅଟକଳ କରି ଯୋଜନା ମାନ ପ୍ରସ୍ତୁତ କରୁଥିଲା ବେଳେ ମଣିଷର ଜନ୍ମ ନିୟନ୍ତ୍ରଣ କରିବାକୁ ସରକାର ଏତେ କୁଣ୍ଠାବୋଧ କାହିଁକି ?

କେହି କେହି କହନ୍ତି "ଭୋଟ୍‌ବ୍ୟାଙ୍କ" ହିଁ ଏହାର ମୂଳ ଉଦ୍ଦେଶ୍ୟ। ଜାତି ନାମରେ ଗୋଷ୍ଠୀ ନାମରେ ଏମାନେ ରାଜନୀତି କରୁଛନ୍ତି। ଆଉ କେହି କେହି କହନ୍ତି ନିଜକୁ ବଡ଼କରି ଦେଖେଇବାକୁ ହେଲେ ନିଜ ଚାରିପଟେ ଅନେକ ଛୋଟ ଲୋକମାନଙ୍କୁ ରଖିବାକୁ ପଡ଼େ। ନା...ମୁଁ ଏ ନ୍ୟାୟରେ ଆଦୌ ସନ୍ତୁଷ୍ଟ ନୁହେଁ। ନିଜର ନାକକୁ ବଡ଼ କରିବାପାଇଁ ଅନ୍ୟମାନଙ୍କର ନାକକୁ କାଟିବାର ପ୍ରୟୋଜନ କ'ଣ ବା ଅଛି। ହେଲେ କାହାକୁ କାହାକୁ ବୁଝାଇବି ଏଇ କଥାସବୁ? ସମସ୍ତେ କହନ୍ତି ନିଆଁ ଅନ୍ଧ, ପାଣି ଅନ୍ଧ, ରାଜା ଅନ୍ଧ ଆଉ କେହି କେହି କହନ୍ତି "ଅନ୍ଧେରୀନଗରୀ ଚଉପଟ ରାଜା- "ଟକାସେର ଭାଜି, ଟକାସେର ଖାଜା।"ଆଉ ଆମ ଦେଶରେ ତ ଟଙ୍କାରେ କିଲେ ଚାଉଳ ଦେଇ ବାହାବା ନେବାକୁ କେନ୍ଦ୍ର ସରକାରଠୁ ଆରମ୍ଭକରି ରାଜ୍ୟ ସରକାରଙ୍କ ପର୍ଯ୍ୟନ୍ତ ସମସ୍ତେ ଅଣ୍ଟାଭିଡ଼ି ବସିଛନ୍ତି। ତଥାପି ଋଷି ଆତ୍ମହତ୍ୟା, ବନ୍ଦହେଉନି କି ଅନାହାର ମୃତ୍ୟୁର ଶେଷ ହେଉନି। ସେଇଥି ପାଇଁ ଆମ ଓଡ଼ିଶାର ବ୍ୟଙ୍ଗକବି ଯଦୁମଣି ତ ଯାହା ଲେଖିଥିଲେ ଆଜି ସେ ଗୀତ ଗାଉଣି ଗାଉଛନ୍ତି- ପାଲା, ଦାଶକାଠିଆ ବାଲା ଗୀତରେ ପରିବେଶଣ ବି କରୁଛନ୍ତି।

ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଧନ ଟେକି -(୧)
ଜଡ଼ା ମଧୁରେ ଖଡ଼ା କଲି ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ
ହେ ରାଜା କିକଲ କିକଲ- (୨)
ବିଷ୍ଣୁ ପ୍ରତିମାକୁ ଯା.....ତଳେ ଥୋଇଲ।

ଏ ଦେଶରେ ଆଇନ୍‌ର କିଛି ଅଭାବ ନାହିଁ। ସେ ଶିଶୁ ଅଧିକାର ଆଇନ୍ ହେଉ ବା ମାନବଅଧିକାରର ଆଇନ୍। କିନ୍ତୁ ସବୁଠି ତାହାର ବ୍ୟତିକ୍ରମ ମଧ୍ୟ ପରିଲକ୍ଷିତ ହେଉଛି। ମୋର ଅଭିଯୋଗ ହେଲା My Lord- ଏମାନଙ୍କୁ ଏମାନଙ୍କ ଅଧିକାରରୁ ଯିଏ ବଞ୍ଚିତ କରୁଛି ସିଏ ବାପା ହୁଅନ୍ତୁ ବା ମାଆ, ସଂସ୍ଥା ହୁଅନ୍ତୁ ବା ସରକାର। ସମସ୍ତଙ୍କୁ କଠୋର ଦଣ୍ଡ ଦେବାର ବ୍ୟବସ୍ଥା କରାଯାଉ My Lord । କଥାରେ ଅଛି ଦୀପଟିଏ ଜଳେଇ ଦେବା ସହଜମାତ୍ର ତାକୁ ଅଖଣ୍ଡ ଦୀପ ଭାବେ ଜଳେଇ ରଖିବା ଖୁବ୍ କଷ୍ଟକର। ଠିକ୍ ସେମିତି ଆଇନଟିଏ ନିର୍ମାଣ କରିବା ହୁଏତ ବା ସହଜ ହୋଇପାରେ ମାତ୍ର ତାର ଯଥାଯଥ ପ୍ରୟୋଗ ଉପରେ ହିଁ ଆଇନ୍‌ର ସଫଳତା ନିର୍ଭର କରେ। ଏଇ ଯେମିତି ସ୍ୱାଧୀନତା ମାନେ ସ୍ୱେଚ୍ଛାଚାରିତା ନୁହେଁ। ମାନବବାଦ ମାନେ ସେମିତି ଯଥେଚ୍ଛାଚାର ନୁହେଁ। ମାତ୍ର ଆଶ୍ଚର୍ଯ୍ୟର କଥା ଯେ ସନ୍ତ୍ରାସବାଦୀଟିଏ ଆଖିବୁଜା ବନ୍ଧୁକ ଚଳେଇ, ବୋମା ପକେଇ ସାଧାରଣ ଜନତାକୁ ଯେତେବେଳେ ହତ୍ୟାକରେ ସେତେବେଳେ ମାନବବାଦର ଉଲଂଘନ ହୁଏନି ? ଅଥଚ ସେଇ ସନ୍ତ୍ରାସବାଦୀଙ୍କୁ Police କିମ୍ବା ସେନା ଗୁଳିକଲେ, କ୍ଷତାକ୍ତ କଲେ ସେମାନଙ୍କର ମାନବାଅଧିକାର ଘୂର୍ଣ୍ଣ ହୁଏ ବୋଲି ମାନବବାଦୀମାନେ ଚିତ୍କାର କରନ୍ତି। ଏହା କେଉଁ ପ୍ରକାରର ଆଇନ୍ ? କେଉଁ ପ୍ରକାରର ଯୁକ୍ତି ? My Lord । ସେମିତି ଆଉ ଗୋଟିଏ ଆଇନ୍ ଯାହା ଦେଶର ଅଗଣିତ ପରିବାରକୁ ଭୀତସ୍ତ କରିରଖିଛି। ଦେଶର ଅଧିକାଂଶ ପରିବାର ତାହା ଯୌଥ ପରିବାର ହେଉ ବା Micro ପରିବାର ହେଉ ସେମାନେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସେଇ ଆଇନ୍‌ର ଜାଲରେ ଛନ୍ଦି ହୋଇ ତ୍ରାହି ତ୍ରାହି ଡ଼ାକ ଛାଡୁଛନ୍ତି। ସେଇଟା ହେଲା 498A (୪୯୮ (କ) ଯୌତୁକ ନିର୍ଯ୍ୟାତନାର ଆଇନ୍....। ଯେତେବେଳେ ଯେଉଁ ଉଦ୍ଦ୍ୟେଶ୍ୟରେ ତାହାକୁ ନିର୍ମାଣ କରାଯାଇଥିଲା ତାହାଥିଲା ସମୟ ଉପଯୋଗୀ ଏକ ମହତ୍ ଉଦ୍ଦେଶ୍ୟ.... କିନ୍ତୁ ଆଜି ସାରା ଦେଶରେ ଏହାର ଯେ ଭଳି ଭାବରେ ପ୍ରୟୋଗ ହେବାରେ ଲାଗିଛି ତାହା ଏକ ପ୍ରକାର ସ୍ୱେଚ୍ଛାଚାରିତାଠାରୁ ଭିନ୍ନ କିଛି ନୁହେଁ ବୋଲି ଜଣାଯାଏ। Statistics କହେ ଯେ ଏଭଳି ୯୩% Case ରେ କୌଣସି ସତ୍ୟତା ପରିଲକ୍ଷିତ ହୁଏନା। କେବଳ ଗୋଟିଏ ପରିବାର ଉପରେ ନିଜର କ୍ରୋଧ ଓ ଆଧିପତ୍ୟ ବିସ୍ତାର କରିବାପାଇଁ ଜଣେ ନିଜର ସ୍ୱେଚ୍ଛାଚାରିତାର ପ୍ରଦର୍ଶନ ପାଇଁ ହିଁ ଏହାର ପ୍ରୟୋଗ କରିଥାଏ। ଯାହା ଫଳରେ ଏବେ ଯେପରି ପୁରୁଷମାନଙ୍କ ଉପରେ Curfew ଲାଗିଯାଇଛି। "ଦେଖିଲା ମାତ୍ରେ ଗୁଳି" "Shoot at Sight" ଭଳି ଅବସ୍ଥା। କଥାରେ ସତ୍ୟତା ଥାଉ ବା ନଥାଉ ଅଭିଯୋଗ ମାତ୍ରେ ଗିରଫ କର ଆଉ ଜେଲ୍ ପଠେଇ ଦିଅ। ଅନ୍ୟ ପକ୍ଷର କଥା ଶୁଣିବାକୁ, ବୁଝିବାକୁ ସମୟ ବା କାହାର ଅଛି ? ଏହାଦ୍ୱାରା ଗୋଟିଏ ସ୍ତ୍ରୀକୁ ସୁରକ୍ଷା ଦେବା ବାହାନାରେ ମାଆ ଏବଂ ଭଉଣୀ ନାମକ ପରିବାରର ଆଉ ଦୁଇଟି ନାରୀର ସ୍ୱାଧିକାରକୁ ଉପହାସ କରାଯାଉଛି। ଯାହା ଏକାନ୍ତ ଅନ୍ୟାୟ। ଏଣୁ ମୋର ଏକାନ୍ତ ଅନୁରୋଧ ଯେ ପୁରୁଷମାନଙ୍କ ଅଧିକାରକୁ ମଧ୍ୟ ସୁରକ୍ଷା ଦିଆଯାଉ My Lord । ମୁଁ ନାରୀ ସୁରକ୍ଷା ଅଧିକାରର ଏକାନ୍ତ ବିରୋଧି ନୁହେଁ। ମାତ୍ର କେବଳ ନାରୀର ସୁରକ୍ଷା ବାହାନାରେ ପୁରୁଷର ଅଧିକାର ବିଶେଷ କରି ପାରିବାରିକ ଅଧିକାର, ଶିଶୁ ପାଇଁ ବାତ୍ସଲ୍ୟର ଅଧିକାର, ପିତାମାତା ଆଦି ବୟସ୍କ ନାଗରିକଙ୍କ ଅଧିକାର, ପିତାପାଇଁ ପିତୃତ୍ୱର ଅଧିକାର ଆଦିରୁ କାହାକୁ ଯେମିତି ବଞ୍ଚିତ କରାନଯାଉ। ପ୍ରକୃତ ଦୋଷୀଯିଏ ଦଣ୍ଡ ପାଉ, ମାତ୍ର ଅସଂଖ୍ୟ ନିର୍ଦ୍ଦୋଷ ମଣିଷ ଆଇନ୍‌ର ଅଡୁଆସୁତାରେ ଛନ୍ଦି ହୋଇ ହନ୍ତସନ୍ତ ନ ହୁଅନ୍ତୁ।

ଭାରତୀୟ ସଭ୍ୟତାରେ ନାରୀର ମହତ୍ତ୍ୱ ଚିରଦିନ ଅଗ୍ରଗଣ୍ୟ ହୋଇ ରହିଥିଲା। ଆଜି ବି ରହିଛି ଓ ସବୁଦିନ ତାହା ଜାଜ୍ୱଲ୍ୟମାନ ହୋଇ ରହିଥାଉ ଏଥିରେ କାହାର ଆପତ୍ତି ନାହିଁ କି ଆପତ୍ତି ରହିବା ଉଚିତ୍ ମଧ୍ୟ ନୁହେଁ। କାରଣ ଆମ ସମାଜରେ ସ୍ୱାମୀ, ସ୍ତ୍ରୀ ଓ ପରିବାର ଏକ ସମବାହୁ ତ୍ରିଭୁଜ ଭଳି। ଏଠି ସମସ୍ତେ ସମାନ, ସମସ୍ତଙ୍କ ଆବଶ୍ୟକତା ମଧ୍ୟ ସମାନ, ଏଣୁ ସମସ୍ତଙ୍କ ଅଧିକାର ମଧ୍ୟ ସମାନ ହେବା ପ୍ରୟୋଜନ। ଏହାକୁ ଏକ ବିଷମ ତ୍ରିଭୁଜରେ ପରିଣତ କରିବାର ପ୍ରୟାସ ନ ହେଉ। ତା'ହେଲେ ଦିନେ ପରିବାର ଓ ପାରିବାରିକ ସମ୍ପର୍କ ତା'ର ସ୍ଥିତି ହରେଇ ବସିବ। ମଣିଷ ସମାଜରେ, ସଭ୍ୟତାରେ ସାମାଜିକ ନ୍ୟାୟକୁ ଦୃଢ଼ କରି ଧରି ରଖିବାପାଇଁ ହିଁ ଆଇନ୍‌ର ସୃଷ୍ଟି କରିଛି। ଆଇନ୍ ତା'ର ନିରପେକ୍ଷ ଧାରାକୁ ଯେକୌଣସି ପରିସ୍ଥିତିରେ ମଧ୍ୟ ବଜାୟୀ ରଖୁ ଏହାହିଁ ମୋର ଏକାନ୍ତ ଅନୁରୋଧ।

ହେ ଆଇନ୍‌ର ଦେବୀ, ନ୍ୟାୟର ଜନନୀ ଏବେବି ସମୟ ଅଛି ଖୋଲି ଦିଅନ୍ତୁ ଆପଣଙ୍କର ଅନ୍ଧ ପୁଟୁଳି। ଆଇନର ଗଳିବାଟ ସବୁକୁ ରୁଦ୍ଧ କରି ଦିଅନ୍ତୁ। ଆଇନ୍‌ର ପୃଷ୍ଠାରୁ ସମସ୍ତ ବିଶେଷ ଅଧିକାରକୁ ସ୍ତବ୍ଧ କରିଦିଅନ୍ତୁ। ଧର୍ମ, ବର୍ଣ୍ଣ, ଲିଙ୍ଗ ଭେଦରେ ସମସ୍ତଙ୍କ ଅଧିକାରକୁ ସାମାଜିକତାର ଭିତ୍ତିଭୂମିରେ ତର୍ଜମା କରାଯାଉ। ସବୁଠି ସତ୍ୟ ଆଉ ନ୍ୟାୟର ଆଇନ୍ ପ୍ରତିଷ୍ଠିତ ହେଉ। ତାହାହିଁ ହେଉ ଏକମାତ୍ର ସତ୍ୟ ସତ୍ୟ ସତ୍ୟ। ତା'ହେଲେ ହିଁ ସମାଜରେ ପ୍ରତିଷ୍ଠା ହେବ ସେଇ ବେଦ ମନ୍ତ୍ରର ବାଣୀ "ଓଁ ସହନାବବତୁ, ସହନୌଭୂନକ୍ତୁ ସହବୀର୍ଯ୍ୟଂ କରବା ବହୈ / ତେଜସ୍ୱିନୀ ବଧିତ୍ ମସ୍ତୁ ମା ବିଦ୍ୱିଷା ବହୈ । ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ।

(ଅନ୍ଧାର)

*(ଦେଖାଗଲା-ଗୀତ ଗାଇ ଗାଇ ବାବାଜୀ ଚାଲିଛନ୍ତି ପଛରେ ଦିଜଣ ଚେଲା (ସ୍ୱର-ପଲ୍ଲୀସ୍ୱର) ଜଣେ ଖୋଳ ବଜାଉଛି ଆଉ ଜଣେ ଗିନି।)*

ବାବାଜୀ - ହରେକୃଷ୍ଣ ହରେକୃଷ୍ଣ, କୃଷ୍ଣ କୃଷ୍ଣ ହରେହରେ।
ହରେ ରାମ ହରେ ରାମ, ରାମ ରାମ ହରେ ହରେ।
ଓହୋ କି ମୁଣ୍ଡ ଫଟା ଖରା କିରେ । ଏଇଠି କେଉଁଠି ଟିକିଏ ବସି ପଡି ଥକ୍କାମାରିଲେ ହୁଅନ୍ତା-

ମନୁଆ - ବାବାଜୀ ମହାରାଜ ଆଉ ଟିକିଏ ଆଗକୁ ଚାଲନ୍ତୁ ଗଛ ଛାଇ ଦେଖି ବସି ପଡିବା।

ବାବାଜୀ - ଆରେ ମନୁଆ ଆମେ ତ ଶ୍ରୀକ୍ଷେତ୍ରରୁ ସାବର ଶ୍ରୀକ୍ଷେତ୍ର ପୁଣି ସାବର ଶ୍ରୀକ୍ଷେତ୍ରରୁ ଶ୍ରୀକ୍ଷେତ୍ର ଏମିତି ଜନ୍ମମାଟି ପରିକ୍ରମା କରି ବୁଲୁଛୁ.....ମୋର ଯାହା ମନେପଡୁଛି ଏଇଠି ଗୋଟିଏ ବରଗଛ ଥିଲା....ତା'ରି ମୂଳରେ ଆମେ ବସି ଥକ୍କାମେଣ୍ଟାଉ ଥିଲେ-।

ମାଧବ - ହଁ ତ ଏଇଠି ଗୋଟିଏ ବରଗଛ ଥିଲା। ଗାଁ ଲୋକ ତାକୁ କାଟି ଦେଇଥିବେ। ଚାଲନ୍ତୁ ସେଇ ଗଛ ମୂଳରେ ବସିବା.....

ବାବାଜୀ - ଗଛଟା ତାଙ୍କର ଏମିତି କି କ୍ଷତି କଲା ଯେ ସେ ତାକୁ କାଟି ପକେଇଲେ।

ମନୁଆ - ସେ କଥା ଆମର ଜାଣି ଲାଭକ'ଣ ଗୋସେଁଇ।

ବାବାଜୀ - ହଉ ଗଲୁଗଲୁ କମଣ୍ଡଳୁରେ ପାଣିଆଣିବୁ ପିଇବା ଭାରି ଖରା । ହଁ ବାବୁ ଶୁଣ ଏଇ ଉତ୍ତରୀୟଟା ବି' ନେଇଯା, ପାଣିରେ ଭିଜେଇ ଆଣିବୁ ମୁଣ୍ଡରେ ପକେଇବା। ଓହୋ ସୂର୍ଯ୍ୟ ଦେବତାଙ୍କର କି କ୍ରୋଧ...ଅଗ୍ନି ବର୍ଷି ଦେଉଛନ୍ତି କି ଆଉ।

ମାଧବ - ହେଲେ ବାବାଜୀ ମହାରାଜ ଗାଁ ଏତ ଏଠୁ ଅଧିକିଲୋମିଟର ଦୂର... ଆମେ ଏଇଠି ନ ବସି ଗାଁ ଭିତରେ ଯାଇ ଠାକୁର ମନ୍ଦିରରେ କିମ୍ୱା ଭାଗବତ ଟୁଙ୍ଗିରେ ବସିଲେ ହୁଅନ୍ତା ନାହିଁ।

ବାବାଜୀ - ହୁଅନ୍ତା ଯେ... ହେଲେ କଥାରେ ଅଛି। ଅନାହୁତ ପ୍ରବିଷ୍ୟତି ଅପୃଷ୍ଟ ବହୁଭାଷତେ ଅବିଶ୍ୱତେ ବିଶ୍ୱସିତିସଃ ମୁଢଚେତା ନରାଧମ.... ଆମକୁ ତ କେହି ଗାଁ କୁ ଡାକିନାହାଁନ୍ତି । ଆମେ ମନକୁ ଯାଇ ତାଙ୍କ ଉପରେ ବୋଝ ହେବା କାହିଁକି ? ସେମାନେ ହେଲେ ସଂସାରି ଲୋକ ତାଙ୍କ କର୍ମରେ ସେମାନେ ବ୍ୟସ୍ତଥିବେ । ଆମେ ତାଙ୍କର ବାଧକ ହେବା କାହିଁକି ?

ମାଧବ - ତା'ହେଲେ ମୁଁ ପୁଣି ଗାଁକୁ ପାଣି ଆଣିବାକୁ ଗଲେ ସେମାନେ ମୋତେ ଦେଖିବେନା ନାହିଁ। ଆପଣ ଏଠିକି ଆସି ବିଶ୍ରାମ ନେଉଛନ୍ତି ବୋଲି ଜାଣିବେ ନା ନାହିଁ, ମନ ଖରାପ କରିବେନି।

ବାବାଜୀ - ବାଃ....ବାଃ.... ତୋର ତ ସାଂସାରିକ ବୁଦ୍ଧି ଭାରିପ୍ରଖର ଅଛିରେ ମାଧବ...ଠିକ୍ ଅଛି ତୋ ମନକଥା ମୁଁ କିଛି କିଛି ବୁଝିପାରୁଛି.... ଖରାରେ ଏତେ ବାଟ ଚାଲି ଯିବାକୁ କଷ୍ଟ ହେବ ବୋଲି ଏମିତି କହୁଛୁ ନା ସତରେ ଗାଁ ଲୋକଙ୍କ ଦୁଃଖ ତୁ ବୁଝିପାରୁଛୁ ସେ କଥା ତୁ ଜାଣିଥିବୁ। ଶୁଣ ବାବା...ତୋତେ ଗାଁକୁ ଯିବାକୁ ପଡିବ ନାହିଁ ଏଇଠୁ ପୋଖରୀ କୂଳକୁ ଯାଇ ସେଥିରୁ ପାଣିନେଇ ଆସ। ଭାରି ନିର୍ମଳ ପାଣି।

ମନୁଆ - ମାଧବ ଭାଇ ମୋତେ ଦିଅ ମୁଁ ଯାଉଛି। ମୁଁ ଦେଖିଛି ସେ ପୋଖରୀ କାଚ କେନ୍ଦୁପାଣି।

ମାଧବ - ନା ନା ମୁଁ ଯାଉଛି। ଆଉ ଗୋଟିଏ ଢାଳ ଦେ ଏକାଥରେ ଦି'ଟା ଜାଗାରେ ପାଣି ନେଇ ଆସିବି ସଞ୍ଜ ପର୍ଯ୍ୟନ୍ତ ବିତିଯିବ (ମନୁଆ ଢାଳଦେଲା ଦି'ଟା ଢାଳ ଧରି ମାଧବ ବାହାରିଗଲା)

ବାବାଜୀ - (ବାବାଜୀ ଗୀତ ଧରିଲେ) ମନ ପାରାରେ...ଶ୍ରୀକ୍ଷେତ୍ରେ ଯିବୁ ଉଡି ଉଠିକି....ଆହା କିଭାଷା, କିଭାବ....କୋହରେ ଛାତିଭିତରଟା କରତି ଯାଉଛି। (ମାଧବ ଧାଇଁ ଧାଇଁ ଆସିଛି)

ମାଧବ - ଗୋସେଇଁ ମହାରାଜ...ସର୍ବନାଶ ହୋଇଛି।

ବାବାଜୀ - କ'ଣ ହୋଇଛି ମାଧବ ଖୋଲି କୁହ ?

ମାଧବ - ଆପଣ କହୁଥିଲେ । ପୋଖରୀରେ ନିର୍ମଳ ପାଣି ?

ବାବାଜୀ - ହଁ କହୁଥିଲି ତ। କ'ଣ ହେଲା

ମାଧବ - ପୋଖରୀ ପାଣି ନିର୍ମଳ କି ନୁହେଁ ଦେଖିବା ପାଇଁ କହିଲେ ତା'ପାଖକୁ ଯାଇପାରିଲେ ତ ? ପୋଖରୀ କୂଳରୁ ତଳକୁ ଓହ୍ଲେଇବାର ଜୁ ନାହି।

ମନୁଆ - ଅଜବ କଥା କୁହୁଛ ଭାଇ ପୋଖରୀ ଭିତରକୁ ଓହ୍ଲେଇବାର ଘାଟ ଅଛି ତ ?

ବାବାଜୀ - ତା'ହେଲେ ଗାଁଲୋକ ପୋଖରୀ ଓଝାଳି ଦେଇଥିବେ। ସେଇଆ କହୁନ ତ ?

ମାଧବ - ନାନା...ପାଣି ଉପରେ ବୋରଜାଞ୍ଜି ଦଳ ଏମିତି ମାଡି ଯାଇଛି ଯେ ପାଣିଦେଖାଯାଉନି।

ମନୁଆ - ତୁମେ ସେଇଠୁ ପଳେଇ ଆସିଲ ?

ମାଧବ - ଆଉ କ'ଣ କରିଥାନ୍ତି। ପାଖକୁ ଯାଇ ଦଳ ଆଡେଇ ଦେଖିଲି ଯେଉଁ ଟିକେ ପାଣି ଅଛି କଳା, ଦୁର୍ଗନ୍ଧ.....ତାକୁ ପିଇବା ତ ଦୂରର କଥା ପାଦ ବୁଡେଇଲେ କୁଣ୍ଡେଇ ମରିବା ସାର ହେବ। ସେଥିରେ କ'ଣ ଉତ୍ତରୀୟ ବୁଡେଇଥାନ୍ତି। ଏଇଟା କଳାପଡି ଯାଇଥାନ୍ତା।

ମନୁଆ - ତା'ହେଲେ ଏବେ କ'ଣ କରିବା। ସାଆନ୍ତେ ପାଣି କେମିତି ମୁନ୍ଦେ ପିଇବେ।

ମାଧବ - ମୁଁ ଯାଉଛି ଗାଁ କୁ ଯିବି। କାହା ଘରୁ ଲୋଟାଏ ପାଣି ନେଇ ଆସିବି।

ବାବାଜୀ - ନାଇଁରେ ମାଧବ ରହ- ମୋତେ ତ ଇଏ କିଛି ଭଲ ଲକ୍ଷଣ ଦିଶୁ ନାହିଁ। ଚାଲ ଆମେ ସାଙ୍ଗ ହେଇ ଗାଁ ଭିତରକୁ ଯିବା। ମନ୍ଦିର ବେଢାରେ ନହେଲେ ଭାଗବତ ଟୁଙ୍ଗିରେ କମ୍ବଳ ପକେଇବା।

ମନୁଆ - ମୁଁ କିଛି ବୁଝିପାରୁନି ସାଆନ୍ତେ ଆଉ ଟିକିଏ ଆଗରୁ କହୁଥିଲ ଯେ ସଞ୍ଜ ଆଗରୁ ଗାଁ ଭିତରକୁ ପଶିବାନି ଅଥଚ ଏଇନେ ଯିବାକୁ ବାହାରି ପଡିଲଣି।

ବାବାଜୀ - ମୋତେ କିଆଁ ଅଲଗା ଅଲଗା ବାସିଲାଣି। ଏ ପୋଖରୀରେ ବୋଝ ଝାଞ୍ଜଦଳ ମାଡି ନାହିଁ ଯେ ଗାଁ ଟାଯାକ ମାଡିଯିବଣି...ଚାଲଚାଲ.... (ବାବାଜୀ ଚାଲିଗଲେ)

ମାଧବ - ଆରେ କହିଲୁ ମନୁଆ- ବୋର ଝାଞ୍ଜିଦଳ ସିନା ପୋଖରୀରେ ମାଡିବ, ନାଳରେ, ଖାଲରେ ମାଡିବ- ଗାଁ ଭିତରେ ମାଡିବ କେମିତି ?

ମନୁଆ - କେଜାଣି ବାବାଜୀଙ୍କ ଗତି, ଆଗକୁ ଠେଲି ଚାଲିଛନ୍ତି।

ମାଧବ - ଚାଲ ଚାଲ ବାବାଜୀ ଯୁଆଡେ ଆମେ ଦି'ଟା ଚେଲା ବି ସିଆଡେ଼।

## ୨ୟ ଦୃଶ୍ୟ

*(ଗାଁର ଯୁବକ ସଂଘ ଆଗରେ। ଯୁବକ ସଂଘରେ ଚାଲିଛି ତାସ୍ ଖେଳ)*

ବାବାଜୀ - ଆରେ ବାଃ । ମା' ମଙ୍ଗଳା ଯୁବକ ସଂଘ ଗଢା ହୋଇଚି । ହେଇଟି ବାବୁମାନେ ଦିନ ଦ୍ୱିପରରେ ବସି କ'ଣ ତାସ୍ ଖେଳୁଛ।

ଯୁବକ-୧ - ଆମ ଗାଁରେ, ଆମ ଯୁବକ ସଂଘ ଘର ଭିତରେ ବସି ଆମେ ତାସ ଖେଳିଲୁ ତ ତୁମର କ'ଣ ଗଲା...ନା ତୁମ ବୋପାର କ'ଣ ଗଲା ?

ମନୁଆ - ତୁମର ତ ଦିମାକ କିଛି କମ୍ ନୁହେଁ ? ତୁମେ ଆମ ବାବାଜୀଙ୍କୁ ଏମିତି ଉତ୍ତର ଦେଉଛ ?

ଯୁବକ-୨ - ତୁମେ ଯାହକୁ କହୁଛ, ଜାଣିଛ ସିଏ ଆମ ଯୁବକ ସଂଘର କିଏ ?

ମାଧବ - ତୁମ ଗାଁ ଯୁବକ ସଂଘ କ'ଣ ଗୋଟିଏ ମହାନ ସଂଘ ।

ଯୁବକ-୧ - (ନିଶାରେ ଢଳି) ଏ ଚେଲା ମୁହଁ ସମ୍ଭାଳି କଥାବାର୍ତ୍ତା କର ନହେଲେ ତୁମକୁ ଆଉ ତୁମ ବାବାଜୀଙ୍କୁ ଆମେ ମଜା ଚଖେଇଦେବୁ।

ବାବାଜୀ - ଯୁବକ ସଂଘରେ ତାହେଲେ ସୋମରସ ସେବନ ବି ଚାଲିଛି । ଭଲଭଲ। ଦେଶତ ଭଲ ଉନ୍ନତି କରିଛି। ଦୁଃଖ କ'ଣ ?

ଯୁବକ-୨ - ଖେଳିଲୁ, ନାଚିଲୁ, ତୁମ ବୋପାର କ'ଣ ଗଲା।

ଯୁବକ-୧ - ଆରେ ବାରବୁଲା ବାବାଜୀ ଗାଁ ଗାଁ ବୁଲିମାଗି ଖାଇବା ତ ତୁମର ଅଭ୍ୟାସ। ଭାବିଥିଲ ଏଠି ସମସ୍ତେ ତାଙ୍କୁ ଦେଖି ପାଦତଳେ ନମ୍ର ନମ୍ର ହୋଇ ଶୋଇଯିବେ।

ଯୁବକ-୨ - ବେକରେ ଗାମୁଛା ପକେଇ ଭୂଇଁରେ ଗଡିଯିବେ କହିବେ ବା ବା ଆମକୁ ବଂଚାଅ ....ଆମକୁ ଆଶୀର୍ବାଦ କର....

ଯୁବକ-୩ - ବାବା ସେଇଠୁ ଗାଦି ଉପରେ ବସି ନିର୍ଦ୍ଧୁମ ପ୍ରବଚନ ଆରମ୍ଭ କରିବେ.....

ଯୁବକ-୧ - ନା କ'ଣ ବାବାଜୀ ? ଏବେ ଏ ଗାଁ ଛାଡି ପଳେଇ ବ ନା ଉତ୍ତମ ମଧମ ଖାଇ ସାରିଯିବ...

ମାଧବ - ବାବାଜୀ ଚାଲ ପଳେଇବା-ଏଠି ପାଣି ଟୋପେ ମିଳିବା ଅସମ୍ଭବ।

ମନୁଆ - ଯାହା କହିଲୁ ମାଧବ- ଦୁର୍ଜନ ସଙ୍ଗେ କଲେବାସ ନିଶ୍ଚେ ଘଟିବ ସର୍ବନାଶ।

ଯୁବକ-୩ - କ'ଣ କହିଲୁ ଆମେ ଦୁର୍ଜନ ଠିକ ଅଛି ଡାକ ତ ବଳିଆକୁ ସିଏ ଆସୁ ଆଜି ଏ କଥାର ବିଚାର ହେବ....

ବାବାଜୀ - ତୁମେ ଯାହାକୁ ଡାକୁଛ ଡାକ ଆମେ କିନ୍ତୁ ଏଇ ଭାଗବତ ଟୁଙ୍ଗିରେ କିଛିଦିନ ରହିବୁ ବୋଲି ଠିକ୍ କରି ଆସିଛୁ।

ଯୁବକ-୨ - ଭାଗବତ ଟୁଙ୍ଗି କାହିଁ? ଏଇଟି ପରା ଲେଖା ହୋଇଛି ମା'ମଙ୍ଗଳା ଯୁବକ ସଂଘ। ଦିଶୁଛି ନା ନାହିଁ।

ଯୁବକ - ପାଠ ଶାଠ ଦିଅକ୍ଷର ପଢିଥିଲେ ସିନା ହବ। ଖାଲି ନାମାବଳୀ ପକେଇ ବୁଲିଲେ ଗାରୁଗାରୁ ହୋଇ ଭାଗବତ, ପୁରାଣରୁ ଦି'ଚାରିପଦ ଗାଇ ପକେଇଲେ ଦେଲେ ତ ବାବା ହୋଇ ବୁଲି ବା କଥା । ଆଉ କାମ କ'ଣ ଅଛି କି ?

ବାବାଜୀ - ଏଇଠି ତ ଆଗେ ଭାଗବତ ଟୁଙ୍ଗି ଥିଲା....

ଯୁବକ-୨ - କେଉଁ କଥା କହୁଛ କୁହ। ଆଜକୁ ୫ବର୍ଷ ହେଲା ଚାଳଛପର ହଟି ଏଇଟା ଟାଇଲି ଛପର ହେଲାଣି, ଭାଗବତ ଟୁଙ୍ଗି ନାମ ହଟି ମା ମଙ୍ଗଳା ଯୁବକ ସଂଘ ହେଲାଣି । ଏଠି ରହିବାକୁ ଜାଗା ନାହିଁ।

ବାବାଜୀ - ଭାବବତ ଟୁଙ୍ଗିଟା କ'ଣ ଆଉ କୁଆଡେ ଉଠିଗଲାକି ? ଚାଲ ଆମେ ସେଇଠି ରହିବା

ଯୁବକ-୩ - ପୂରା ଉଠିଗଲା, ଏ ଗାଁରେ ଭାଗବତ ଟୁଙ୍ଗି ନାହିଁ। ରହିବ କେଉଁଠି ?

ଯୁବକ-୧ - କେଉଁ ଆଦିମ ଯୁଗରେ ଅଛ କି ହୋ ବାବାଜୀ ? ଦେଖି ପାରୁନ ଆମ ଗାଁର ଢଙ୍ଗ ରଙ୍ଗ।

ବାବାଜୀ - ଦେଖୁଛି ବୋଲି ତ ଏଇଠି କିଛିଦିନ ରହିବାକୁ ଇଛା କରିଛି। ଦେଖିଲୁ ତ ମନୁଆ କହୁନଥିଲି ବୋର ଝାଞ୍ଜି ଖାଲି ଗାଁ ଗାଡିଆରେ ନୁହେଁ। ଗାଁ ସାରା ମାଡି ଯାଇଛିରେ ଯାକୁ ସଫା କରିବା ଦରକାର।

ଯୁବକ-୧ - (୨ୟ ଯୁବକକୁ) ଯା ଯା ଭାଇକୁ ଡାକି ଦେବୁ ନା -ଇଏ କ'ଣ ଜବରଦସ୍ତି ଏଠି ଆସର ଜମେଇବାକୁ ବସିଲେଣି...ଆରେ ଆରେ କିଛି ନକହିଲା ବେଳକୁ ପୂରା ମୁଣ୍ଡରେ ଚଢି ଗଲେଣି ଦେଖୁଛି।

ବାବାଜୀ - ଆରେ ବାବା ରାଗୁଛ କାହିଁକି ? ଏଠିକି କ'ଣ ମୁଁ ନୂଆ କରି ଆସିଛି ଆଗରୁ କେତେ ଥର ଆସି ଏଇ ଭାଗବତ ଟୁଙ୍ଗିରେ ରହିଛି। ଆଜି ମୋତେ ବାରଣ କରୁଛ କାହିଁକି ? ତୁମ ଗାଁ ମୁରବି ସବୁ କାହାନ୍ତି ସେମାନଙ୍କୁ ଡାକ।

ଯୁବକନେତା - (ପ୍ରବେଶୀ) ସେମାନେ ସବୁ ଆସିବେ କାହିଁକି ? ଆମେ ପରା ଅଛୁ ଯାହା କହିବା କଥା ଆମକୁ କୁହନ୍ତୁ। ଆମେ ଏବେ ଗାଁ କଥା ବୁଝୁଛୁ।

ଯୁବକ-୧ - ଏ ବାବାଜୀ ଆଉ ତାଙ୍କ ୨ ଚେଲା ଏଇ ଯୁବକସଙ୍ଘରେ ରହିବେ କହୁଛନ୍ତି ?

ଯୁବକନେତା - କାହିଁକି ? ଏଇଟା କ'ଣ ତାଙ୍କ ବୋପା ସମ୍ପତ୍ତି ?
ବାବାଜୀ ଏଇଠି ତ ଭାଗବତ ଟୁଙ୍ଗି ଥିଲା।

ଯୁବକନେତା - ଯେତେବେଳେ ଥିଲା ସେତେବେଳେ ରହୁଥିଲ । ଏବେ ଏଇଟା ଯୁବକ ସଂଘ ଦେଖିପାରୁନ ?....ଏଇ ରହିବାକୁ ଯାଗାନାହିଁ।

ବାବାଜୀ - ତା'ହେଲେ କେଉଁଠି ରହିବୁ ?

ଚେଲା - (ଚୁପଚୁପ) ଚାଲ ଏ ଗାଁ ଛାଡି ପଳେଇବା ବାବାଜୀ।

ଚେଲା-୨ - ଆପେ ବଞ୍ଚିଥିଲେ ବୋପାର ନାମ....

ବାବାଜୀ - ଆମେ ତା'ହେଲେ ଏଇ ବାରଣ୍ଡାରେ ରହିଯାଉଛୁ।

ଯୁବକ-୨ - ନା ନା ହୋଇପାରିବନି-ଆମକୁ ଅସୁବିଧା ହେବ

ବାବାଜୀ - କ'ଣ ମଦ ପିଇବାରେ ଅସୁବିଧା ହେବ, ନା ତାସ ଖେଳିବାରେ ଅସୁବିଧା ହେବ ?

ଯୁବକ - (ନେତାକୁ) ଦେଖୁଛ ଦେଖୁଛ ଭାଇ ବାବାଜୀର କଥା..

ନେତା - ଏ ବାବାଜୀ ଏଇଟା ଆମ ଗାଁ । ଆମ ଯୁବକ ସଂଘ। ଆମେ ସେଠି ମଦ ପିଇଲୁ, କି ତାସ, ପଶା ଖେଳିଲୁ ସେଥିରେ ତୁମର ମୁଣ୍ଡ ବୁଲେଇବା ଦରକାର ନାହିଁ।

ବାବାଜୀ - ଆମେ ତା'ହେଲେ ରହିବୁ କେଉଁଠି ?

ନେତା - ସେ କଥା ଆମେ କିମିତି କହିବୁ ? ତୁମେ ଯେଉଠି ରହୁଛ ରୁହ ପଛେ ଏଇ ଯୁବକ ସଂଘର ଘରେ ବା ବାରଣ୍ଡାରେ ରହିପାରିବେନାହିଁ।

ବାବାଜୀ - ତା'ହେଲେ ଚାଲ ଆମେ ମନ୍ଦିରରେ ରହିଯିବା କେଇଟା ଦିନର କଥାତ ?

ନେତା - ମାନେ ବାପରାଣ ପକେଇ ଢିଙ୍କି ଗିଳିବାକୁ କହିବ ନା କ'ଣ ? ତୁମକୁ ଏଠି ରହିବାକୁ କହିଲା କିଏ ନା ତୁମେ ଏଠି ରହିବ କାହିଁକି ?

ଯୁବକ-୨ - ଆରେ ଆରେ ଆମେ କିଛି ନ କହିଲା ବେଳକୁ ଇଏତ ପୂରା ଡେରା ପକେଇ ଆସ୍ଥାନ ଜମେଇ ଦେବାକୁ ବସିଲେଣି।

ଯୁବକ-୩ - କହିଲା କ'ଣନା ପକା କମ୍ବଳ ପୋତ ଛତା।

ଯୁବକ-୧ - ବସ ରେ ଚେଲା ମାରିବା ଗେମା। ଚାଲ ଚାଲ ଅନ୍ୟ ରାସ୍ତା ଦେଖ ଏଠି ରହିବା ଖାଇବା ପଟିବନି।

ବାବାଜୀ - ଖାଇବାକୁ ନଦେବ ନାହିଁ ଆମେ ଭିକ୍ଷା କରି ଖାଇବା।

ନେତା - ଏ ଗାଁରେ ଭିକମାଗିବା ନିଷେଧ....

ବାବାଜୀ - ସତେ ନା କ'ଣ? ବାଃ ଭାରି ବଢ଼ିଆ କଥା...ଏନିୟମ ତ ଆଗରୁ ଏ ଗାଁରେ ନଥିଲା-କେବେଠାରୁ ହେଲାଣି?

ନେତା - ଆଜିଠାରୁ ହେଲା-ମାନେ....

ଯୁବକ-୧ - ଏବେଠାରୁ ଏ ନିୟମ ଲାଗୁହେଲା... ଆଉ କିଛି କହିବ ?

ଯୁବକ-୨ - ଆମ ପ୍ରେସିଡେଣ୍ଟ କହିଲେଣି ମାନେ ତାଙ୍କ ଆଜ୍ଞା...ବେଦର ଗାର।

ଚେଲା-୧ - ବାବାଜୀ ଚାଲ ପଳେଇବା- ଏଠି କିଛି ଭଲ ଦିଶୁନି

ଚେଲା-୨ - ଅମଣିଆ ରାଜାକୁ ପାଳଚୁଣ୍ଡା ମନ୍ତ୍ରୀ.....

ଯୁବକ-୩ - କ'ଣ କହିଲ...ପାଟି କରି କହୁନ ଆମେ ସମସ୍ତେ ଶୁଣିବୁ...

ବାବାଜୀ - ଅନ୍ଧ ଦେଶକୁ ଗଲି ଦର୍ପଣ ବିକି, କନ୍ଧ ହାତରେ ଦେଲି ଗୋଧନ ଟେକି-ଜଡା ମଧ୍ୟରେ ଖଡା କଲି ରନ୍ଧନ, କାମୁଡା ଘୋଡା ମୁଖେ ଦେଲି ଚୁମ୍ବନ...... ହେ ରାଜା କିକଲ କିକଲ- ବିଷ୍ଣୁ ପ୍ରତିମାକୁ ଯା ତଳେ ଥୋଇଲ.....

ନେତା - ଥୋଇଲୁଣି କେଉଁଠି । ଏବେ ଥୋଇବା ଆରମ୍ଭ କରିବା । ଆରେ ଏ ବାବାଜୀ ଚେଲା ଦୁଇଟାକୁ ବାନ୍ଧରେ। ଦେଖ ଉତ୍ତମ ମଧ୍ୟମ କରି ଦିଗଣ୍ଡା ଥୋଇଲେ ଯାଙ୍କର ଜ୍ଞାନ ପାକଳ ହୋଇଯିବ।

ଯୁବକ-୩ - କାହିଁକି ଏଇନେ ଯୁଆଳି ବନ୍ଧା ହେବ କହିଲ ଗୋସାଇଁ ଭଲଦଶା ଅଛିତ ଏ ଗାଁ ଛାଡି ଏକ୍ଷଣି ପଳେଇ ଯାଅ.....

ଚେଲା - ୧/୨...ହଁ ହଁ ଚାଲ ଗୋସେଇଁ କାହିଁକି ଏମାନଙ୍କ ପିଛା ପଡିଛ କହିଲ...

ବାବାଜୀ - ଯିବା ଯେ ହେଲେ ଆଜି ନୁହେଁ କାଲି ସକାଳ ପାହିଲେ ଯିବା....

ନେତା - ହେ...ଏଇହେ ଇଏ ଆମକୁ ଭାଗବତ ପଢେଇବେ ଦେଖୁଛି। ନପାହୁ ରାତି, ନମରୁ ପତି-ଏକ ରାତି ହେଉ ସପତ ରାତି ଆଉ ରାତି ପାହିବଯେ ହବ....ବାନ୍ଧବାନ୍ଧ ତାଙ୍କୁ ଆଜି ଯାଙ୍କର ବିଚାର ମା'ମଙ୍ଗଳା କରିବେ ଓଝାଙ୍କୁ ଖବର ଦିଅନ୍ତେ ସନ୍ଧ୍ୟା ଧୂପ ଆଳତୀ ବେଳେ ମାଙ୍କୁ ଝୁଣା ଧୂପ ବାଡେଇ କାଳିସୀ ଲାଗିବେ। ମା'ନିଜେ ଯାଙ୍କର ବିଚାର କରି ଏମିତି ଭଣ୍ଡ ବାବାଜୀ ଆଉ ଚେଲାଙ୍କୁ ଦଣ୍ଡ ଦେବେ।

# ୩ୟ ଦୃଶ୍ୟ

*(ଦେଖାଗଲା ଓଝା କାଳିସୀ ଲାଗିଛି)*

ଓଝା - ଝୁଣାଦେ..ଧୂପ ଦେ...ଘଣ୍ଟା ବାଡା....ବଜା ବାଜା । ଏଥିର କହ...ମୋତେ କାହିଁକି ଡାକିଲୁ ?

ନେତା - ମାଆ....ଏଇ ଭଣ୍ଡ ବାବାଜୀ ଆଉ ତାଙ୍କର ଏ ଚେଲା ଦିଜଣଙ୍କର ତୁ ବିଚ୍ଛରକର।

ଓଝା - କ'ଣ ବିଚ୍ଛର କରିବି ସେ କଥା କହ ?

ନେତା - ଏମାନେ କିଏ ଆମ ଗାଁକୁ ଆସି ଜବର ଦସ୍ତି ଏଠି ଆସ୍ଥାନ ଜମେଇ କରିବାକୁ ଚ୍ଛହୁଁଛନ୍ତି । ଯୁବକ ସଂଘ କୁ ଆଶ୍ରମ ଆଉ ତୋର ଆସ୍ଥାନ ବେଢାକୁ କବ୍‌ଜା କରି ନେବାକୁ ବସିଛନ୍ତି।

ଓଝା - ଏଁ....ଏତେ ବଡ ଆସ୍ପର୍ଦ୍ଧା । ଏ ଭଣ୍ଡ ବାବାଜୀ ! କହ ତୋର ଇଚ୍ଛା କ'ଣ? ସତ କହ ?

ବାବାଜୀ - ମୁଁ ଛାର ବା କ'ଣ କହିବି-ମାଆ। ତୁମେ ତ ଅନ୍ତର୍ଯ୍ୟାମୀ । ତୁମେତ ଏ ଜଗତର ମାଆ। ତୁମେ କ'ଣ ଅନ୍ତରର କଥାଜାଣି ପାରୁ ନାହଁ ଯେ ମୁଁ ପୁଣି ମୁହଁ ଖୋଲି କହିବି?

ନେତା - ହଁ କହିବାକୁ ହେବ।

ଯୁବକମାନେ - ହଁ ହଁ କହିବାକୁ ହେବ।

ଓଝା - ଦେଖ ବାବାଜୀ ମୁଁ ସିନା ଜାଣିଛି । ହେଲେ ଏମାନେ ଜାଣିନାହାଁନ୍ତି । ଏମାନଙ୍କୁ ଜଣାଇବା ପାଇଁ ମୁହଁ ଖୋଲିସବୁ ସତ ସତ କହିଦେ।

ବାବାଜୀ - ମୁଁ କହି ଦିଅନ୍ତି ଯେ ମାଆ-ହେଲେ ଛୋଟ ମୁହଁରେ ବଡ କଥା ହେବ- ମୋତେ ସେଥିପାଇଁ ମାଡିପଡୁଛି । ଦେଖମା ମୁଁ ଆଜି ବାବାଜୀ ହୋଇଛି କାହା ପାଇଁ? ତୁ ମୋତେ ସ୍ୱପ୍ନରେ ଆଦେଶ ଦେଲୁ, ଘର ସଂସାର କରନା। ପ୍ରଭୁ ନାମ ଜପକର। ମୁଁ ମୋର ମଙ୍ଗନ ଦିନ ରାତି ନପାହୁଣୁ ଘର ଦ୍ୱାର ବାପା ମାଆ ଙ୍କୁ ଛାଡି ବୈରାଗୀ ହୋଇଗଲି। ନହେଲେ ଆଜି ବାପା ମାଆଙ୍କର କେନାଲ ପାଖ ୨୦ ଏକର ଦୋଫସଲି ଜମିର ମାଲିକ ହୋଇ ମୂଲିଆ ମଜୁରୀ ଖଟେଇ ଗୋଡ ଉପରେ ଗୋଡ ପକେଇ ବସିଥାନ୍ତି । ଖାଲି ସେତିକି ନୁହେଁ ମୁଁ ମୋର ଗୋଟିଏ ସିଦ୍ଧ ଆଶ୍ରମ ତିଆରି କରି ସାଧନ ଭଜନ କରିଥାନ୍ତି ଜନତାଙ୍କର ଦୁଃଖ ଦୁର୍ଦ୍ଦଶା ହରଣ କରୁଥାନ୍ତି। କିନ୍ତୁ ତୁ ମୋତେ ପୁଣି ସ୍ୱପ୍ନରେ କହିଲୁ ନା ନା ତୁ ଶ୍ରୀକ୍ଷେତ୍ରରୁ ସାବରଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ପୁଣି ସାବରଶ୍ରୀକ୍ଷେତ୍ରରୁ ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ପରିକ୍ରମା କରି ଚ୍ଛଲ। ଭିକ୍ଷାନ୍ନ ସଂଗ୍ରହକରି ଜୀବନ ଧାରଣ କର। ମୁଁ ତ ପରିକ୍ରମା କରି ଚ୍ଛଲିଛି। କାଲି ରାତିରେ ସପନରେ ଦେଖା ଦେଇ କହିଲୁ । ଏଇ ଗାଁକୁ ଚ୍ଛଲ, କେଇଦିନ ପରେ ତୋର କାଲେ ବାର୍ଷିକ ଉତ୍ସବ ଆସୁଛି ସେ ପର୍ଯ୍ୟନ୍ତ ସେଇଠି ରହିବୁ। ମୁଁ ପଚ୍ଛରିଲି କାହିଁକି? ତା'ପରେ ତୁ ଯାହା କହିଲୁ। ମୁଁ ବିଶ୍ୱାସ କରିପାରିଲି ନାହିଁ। ମୁଁ ଅମଙ୍ଗ ହେଲି । କହିଲି ମାଆ ମୁଁ ହେଲି ବାବାଜୀ ଲୋକ ମୋର ସେ ପୋତା ଧନ କ'ଣ ହେବ? ମୋର ଦରକାର ନାହିଁ। ଯେଉଁ ମାନଙ୍କର ଦରକାର ତାକୁ ଦିଅ । ତୁମେ ମୋତେ ସ୍ୱପ୍ନରେ ଆଦେଶ ଦେଇ କହି ଦେଇ ପାରୁଛ । ଗାଁର ଓଝା କିମ୍ବା ମୁଖିଆଙ୍କୁ ସ୍ୱପ୍ନରେ ଆଦେଶ ଦେଇ କହିଦେଉନ । ସେମାନେ ସେ ଧନ ଖୋଜିବେ। ଆଉ ନେଇଯିବେ। ତୁମେ ମୋତେ ଆଖି ଦେଖେଇ କହିଲ କଞ୍ଚା ଖାଇ ଦେବି । ରକ୍ତ ବାନ୍ତି କରିମରିବୁ ବାଧ ହୋଇ ଏଠିକି ଆସିଲି । ଏବେ ଏମାନେ ମୋତେ ରଖେଇ ବସେଇ ଦେଉନାହାଁନ୍ତି । ମାର ଧର କରିବାକୁ ବସିଲେଣି। ଏବେ ତୁ କହ ମୁଁ କ'ଣ କରିବି? (ସମସ୍ତେ ନିରବ) ତୁ କହିଲୁ ୫ ମାଠିଆ ଧନ ଅଛି । ଗୋଟିକରେ ତୋ ମନ୍ଦିର

ତିଆରିହେବ । ଗୋଟିକରେ ତୋର ଗହଣା ତିଆରିହେବ । ଗୋଟିଏ ମାଠିଆ ଧନରେ ତୋ ପାଇଁ ପୋଖରୀ ଆଉ ଗୋଟିକରେ.....

ନେତା - ଥାଉ ଥାଉ...ମାଆ। ଏସବୁ କଥା ତ ବାବାଜୀ ଆଗରୁ କହିନଥିଲେ ଆମେ ଜାଣିଥାନ୍ତୁ କେମିତି। ଆମର ପ୍ରାର୍ଥନା ଏମାନଙ୍କୁ ମାଫ କରିଦିଅ..ସେ ଏଇ କ୍ଲବ ଘରେ ତୁମର ପ୍ରତିଷ୍ଠା ଦିବସ ପର୍ଯ୍ୟନ୍ତ ରହିଥାନ୍ତୁ। ଆଉ କେତେ ଦିନ ତ ?

ଯୁବକ - ୧ ପ୍ରାୟ ସପ୍ତାହେ ରହିଲା....

ନେତା - ହଉ ସେଇ କେଇଟାଦିନ ଆମେ Adjust କରିନେବା।

ଯୁବକ - ଏତେ ଦିନ ସେମାନେ ଏଠି ରହିଲେ ଆମେ କେଉଠି ରହିବୁ...କ'ଣ କରିବୁ, ଖେଳିବୁ ମସ୍ତି କରିବୁ କେଉଁଠି ?

ନେତା - ଆମ ଘରେ ରହିବ.....ଯାହାହେଲେ ମାଆଙ୍କ କଥା ଆମକୁ ମାନିବାକୁ ପଡିବ ନା ନାହିଁ...

ଓଝା - ହଁ ହଁ ସେ ମୋର ଭକ୍ତ । ତେଣୁ ଏଇ କେତେ ଦିନ ସେମାନେ ଏଇ ଯୁବକ ସଂଘରେ ରହନ୍ତୁ । ତାଙ୍କ ବନ୍ଧନ ଖୋଲିଦିଅ..... (ଦଉଡ଼ି ଖୋଲିଦେବା)

ବାବାଜୀ - ମାଆ- ଏ ହାତର ବଂଧନ ସିନା ଖୋଲିଦେଲ ଆଉ ଏ ସଂସାର ବନ୍ଧନ କେବେ ଖୋଲି ବ କହିଦିଅ.... ମୋର ଆଉ ଏ ସଂସାରରେ ରହିବାର ଇଚ୍ଛାନାହିଁ।

ଓଝା - ହଉ ହଉ ପୋତାଧନର ସନ୍ଧାନ ପାଇଲା ପରେ ସେ କଥାମଧ ତୋତେ ଖୋଲି କହିବି। ବାଜା ବଜାରେ...ଝୁଣା ମାଡକର...

ସମସ୍ତେ - ମା ମଙ୍ଗଳାଙ୍କର ଜୟ.....

## ୪ର୍ଥ ଦୃଶ୍ୟ

*(ସେଦିନ ରାତିରେ ପ୍ରାୟ ଅଧ ରାତିରେ, ଦେଖାଗଲା ଗୋଟିଏ ଛାଇ ଆସି କବାଟ ବାଡେଇ ଲୁଚିଲେ।)*

ଚେଲା - କବାଟ ଖୋଲିଲା...(କେହିନାହିଁ) (ଫେରିଯାଉଥିଲା ବାବାଜୀ ଆସିଲେ)

ବାବାଜୀ - କ'ଣ ହେଇଛି ମାଧବ...କାହାକୁ ଖୋଜୁଛନା କ'ଣ ?

ଚେଲା - କିଏ କବାଟ ବାଡ଼େଇଲା ପରି ଲାଗିଲା ମୁଁ କବାଟ ଖୋଲି ଦେଖୁଛି ତ କେହି କୁଆଡ଼େ ନାହାଁନ୍ତି।

ବାବାଜୀ - ତୁମେ ନିଦ ବାଉଳାରେ ଭୁଲ ଶୁଣିଥିବ ବା ସପନରେ ସେମିତି ଦେଖିଥିବ । ଯାଅ ଶୋଇବ। ମୁଁ କବାଟ ବନ୍ଦକରି କିଛି ସମୟ ପରେ ଯିବି...

ଚେଲା - ଏଇ ଅନ୍ଧାରରେ ଏଠି କ'ଣ କରିବେ ?

ବାବାଜୀ - କିଛି ସମୟ ଧ୍ୟାନ, ଜପ କରି ତା'ପରେ ଯାଇ ଶୋଇବି । ତୁମେ ଯାଅ.... (ଚେଲା ପ୍ରସ୍ଥାନ। ବାବାଜୀ ବସି ଧ୍ୟାନ କଲେ) (ଛାୟା ଆସିଲା)

ନେତା - ବାବାଜୀ.....

ବାବାଜୀ - କିଏ ?

ନେତା - ମୁଁ । ଏ ଗାଁ ଯୁବକ ସଂଘର ପ୍ରେସିଡେଣ୍ଟ...

ବାବାଜୀ - ଏତେ ରାତିରେ ?

ନେତା - ତୁମ ସାଙ୍ଗରେ ଜରୁରୀ କଥା ଥିଲା ?

ବାବାଜୀ - ଏଇଠି କହିବ ?

ନେତା - ତୁମ ଚେଲାମାନେ ଶୁଣିବେ।

ବାବାଜୀ - ସେମାନେ ଶୋଇପଡିଲେଣି। କ'ଣ କହିବ କୁହ।

ନେତା - ସେ ପୋତାଧନ କେଉଁଠି ଅଛି ?

ବାବାଜୀ - କେଉଁ ପୋତାଧନ କଥା କହୁଛ ?

ନେତା - ସେଇ ପାଞ୍ଚ ମାଠିଆ ପୋତାଧନ ଯାହା ସଞ୍ଜବେଳେ ଠାକୁରାଣୀଙ୍କ କାଳିସି ସାମନାରେ କହୁଥିଲ... ?

ବାବାଜୀ - ଓ ହୋ....ସେଇ କଳସୀର ସନ୍ଧାନ ତ ମୋତେ ମାଆ ଦେଇ ନାହାଁନ୍ତି । ସେଦିନ ବାର୍ଷିକ ପୂଜାପରେ, ରାତିରେ ସ୍ୱପ୍ନରେ ମୋତେ ସେଇଧନ ଏବଂ ତାର ପୋତା ସ୍ଥାନ ସବୁ ସମ୍ପର୍କରେ କହିବେ ବୋଲି କହିଛନ୍ତି।

ନେତା - ଖାଲି କହିବେ ନା ଦେଖେଇ ଦେବେ ?....

ବାବାଜୀ - ସେ କଥା ମୁଁ କେମିତି ଏବେ କହିବି ? ତଥାପି ମୁଁ ସବୁମାଠିଆ କୁ ନିଜେ ଖୋଲିବି । ତା ଭିତରେ କ'ଣ ଅଛି, ସାପ କି ବେଙ୍ଗ ନ ଦେଖିବା ପର୍ଯ୍ୟନ୍ତ କ'ଣ ତାଙ୍କୁ ଛାଡିବି ନା କ'ଣ ?

ନେତା - ଆପଣ କହୁଥିଲେ ୫ ମାଠିଆ ପୋତାଧନ କଥା।

ବାବାଜୀ - କହୁଥିଲି କି ? ତା'ହେଲେ ହୋଇଥିବ ? ତେବେ ୫ ମାଠିଆ ହେଉକି ୭ ମାଠିଆ ହେଉ ମୋର ସେଥିରେ ଯାଏ ଆସେ କ'ଣ ? ଠାକୁରଙ୍କ ଧନ ଠାକୁରଙ୍କ କାମରେ ଆସିବ। ତୁମ ଗ୍ରାମବାସୀଙ୍କ କାମରେ ଆସିବ ମୋର ସେ ଧନକୁ ନେବାର ନାହିଁକି ଛୁଇଁବାର ନାହିଁ। (ଏତିକିବେଳେ ଆଉ ଏକ ଛାଇ ଆସି ଦୂରରେ ରହିଲା)

ନେତା - ତା'ହେଲେ ସେ ଧନ ସବୁ ଆପଣ କ'ଣ କରିବେ ?

ବାବାଜୀ - ମୁଁ ଆଉ କ'ଣ କରିବି ? ମୋର ତ କିଛି କରିବାର ନାହିଁ। ମୁଁ ଖାଲି କେଉଁଠି କେତେ ମାଠିଆ ଅଛି ଓ ସେଥିରେ କେଉଁକେଉଁ କାମ ହେବ। କେତେ କେତେ ଧନ ଖର୍ଚ୍ଚ କରାଯିବ ବତେଇ ଦେଇ ଚାଲିଯିବି। ସେ ଧନକୁ ମୋର ଦେଖିବାର ନାହିଁକି ଛୁଇଁବାର ଇଚ୍ଛା ନାହିଁ ? ତେଣିକି ମାଆ ଯାହା ଆଦେଶ କରିବେ ମୁଁ ତାକୁ ଗାଁ ବାଲାଙ୍କ ଆଗରେ ଖୋଲି କହିଦେବି।

ନେତା - ସେ ଧନର ଖବର କାହାକୁ ଦେବେ।

ବାବାଜୀ - ମାଆ ଯାହାକୁ କହିବେ- ଗାଁ ମୁଖିଆଙ୍କୁ, ନହେଲେ ଓଝାଙ୍କୁ ନ ହେଲେ ଆଉ କାହାକୁ....

ନେତା - ଆପଣଙ୍କୁ ମୁଁ ଗୋଟିଏ ଅନୁରୋଧ କରିବି ରଖିବେ ?

ବାବାଜୀ - କହୁନାହାଁନ୍ତି। ରଖିବାର ହେଲେ ନିଶ୍ଚୟ ରଖିବି ?

ନେତା - ସେ ସବୁ ଧନର ଖବର ପ୍ରଥମେ ମୋତେ ଦେଇ ଦେଇଥିବେ...କାରଣ ମୁଁ ଏ ଗାଁର ମୁଖିଆ କୌଣସି ମତେ ବି ସେ ଓଝାକୁ ଏଖବର ପ୍ରଥମେ ଦେବେନାହିଁ।

ବାବାଜୀ - ଠିକ୍ ଅଛି କିନ୍ତୁ ମାଆ ଯଦି କହନ୍ତି।

ନେତା - ତଥାପି ଆଗ ମୋତେ ଖବର କରିବେ । ଆଉ ଗୋଟିଏ କଥା...।

ବାବାଜୀ - କହନ୍ତୁ - ଶୁଣୁଛି ?

ନେତା - ଯେତେ ମାଠିଆ ଧନ ଆପଣଙ୍କୁ ମା ସ୍ୱପ୍ନରେ ଦେଖିଇବେ। ଆପଣ ସମସ୍ତଙ୍କ ଆଗରେ ସେଥିରୁ ଗୋଟିଏ ମାଠିଆ କମ୍ କରି କହିବେ। କାରଣ

ବାବାଜୀ - ବୁଝିପାରୁଛି । ତେବେ ମୁଁ ତ ମିଛ କହିବି ନାହିଁ।

ନେତା - ନହେଲେ ତୁମେ ତିନିଜଣ ଏଠୁ ଜିଅନ୍ତା ଯାଇ ପାରିବ ନାହିଁ।

ବାବାଜୀ - ଆଚ୍ଛା ଏମିତି ମୁଁ ତାହେଲେ ନିଶ୍ଚୟ ଚିନ୍ତାକରି କହିବି । ମିଛ କହିଲେ ତ ରକ୍ତ ବାନ୍ତି କରି ମରିବାକୁ ପଡିବ।

ନେତା - ସେ କଥା ତୁମେ ବୁଝିବ।

ବାବାଜୀ - ତାମାନେ ଏପଟେ ମଲି ସେପଟେ ମଲି ଗମ୍ଭୀରାରେ ବସି ନାମ ଜପିଲି।

ନେତା - ଆଉ କହିବି କ'ଣ- ମୋ ଇସାରାରେ କାମ କରିବ ଯଦି ପୁରସ୍କାର ଦେବି। ନ ହେଲେ ଜୀବନ ଧରି ଫେରିବି ନାହିଁ ଜାଣିଥା ବାସ୍...

ବାବାଜୀ - ଆଚ୍ଛା ମାଆ ଯଦି ଓଝାଙ୍କୁ ଧନ କଥା କହିବାକୁ କୁହନ୍ତି।

ନେତା - ତାଙ୍କୁ ଭୁଲି ଠିକଣା ଜଣେଇବ। ନହେଲେ ସେ ନିଜେ ସବୁ ହଡପ କରିନେବ। ଅବଶ୍ୟ ମୁଁ ଛାଡିବା ଯନ୍ତୁ ନୁହେଁ। ମୁଁ ତାକୁ ସହଜରେ ଛାଡିବି ନାହିଁ । ତେବେ ତୁମେ ଚାହିଁଲେ ସବୁ ଏପଟସେପଟ କରିଦେଇ ପାରିବ।

ବାବାଜୀ - ସେଥିରେ ମୋର ଲାଭ କ'ଣ ହେବ ବାବା।

ନେତା - ମୁଁ ତୁମକୁ ଗୋଟିଏ ମାଠିଆ ଧନ ଦେଇ ଦେବି...

ବାବାଜୀ - ଠିକ୍ ଅଛି ସେଦିନ ଆଗେ ଆସୁ ଆମେ ଦିଜଣ ଗୋପନରେ ବସିସବୁ ଠିକ୍ କରିବା । ଆପଣ ଯାଆନ୍ତୁ ମୁଁ ଆପଣଙ୍କ ସହିତ ଅଛି। ଆପଣ ଯାହା କହିବେ ସେଇଆ ହବ।

ନେତା - କହିବ ଯଦି ଆହୁରି କିଛି ଅଧିକ ଧନ ଦେଇପାରେ। କିନ୍ତୁ ଖବରଦାର ଓଝାକୁ କିଛି କହିବ ନାହିଁ।

ବାବାଜୀ - ସେ ବିଷୟରେ ନିଶ୍ଚିତ ରୁହନ୍ତୁ । ମୁଁ କଥା ଦେଲି ମାନେ ସେଥିରୁ ଟିକେବି ହଲିବି ନାହିଁ। ଖାଲି ପଦେ କଥାରେ ପରା ଶ୍ରୀରାମଚନ୍ଦ୍ର ୧୪ବର୍ଷ ବନ ବାସ ଚାଲିଗଲେ। ମୁଁ କଥା ଦେଇ ସାମାନ୍ୟ ଗୋଟିଏ ମାଠିଆ ଆପଣଙ୍କୁ ଦେଇ ପାରିବି ନାହିଁ। ଅଲବତ ଦେବି...ମାତ୍ର ସମସ୍ୟା ହେଲା ଗୋଟିଏ ମାଠିଆ କମ୍ କରି କହିଲେ କିମିତି ହେବ କହିଲେ ?

ନେତା - ମାନେ....

ବାବାଜୀ - ଗୋଟିଏ ମାଠିଆ ତ ଆପଣ ମୋତେ ଦେଇ ଦେବେ ବୋଲି କହିଲେ । ତା'ହେଲେ ଆପଣ ପାଇବେ କ'ଣ ? ଏଇଟା ତ ମୋ ପାଇଁ ଅନ୍ୟାୟ ହେବ।

ନେତା - ତା'ହେଲେ ୨/୩ଟା ମାଠିଆ କମ କରି କହି ଦେଉ ନାହାଁନ୍ତି। ଆପଣଙ୍କର ଅସୁବିଧା କ'ଣ ?

ବାବାଜୀ - ଠିକ୍ ଠିକ୍ ଏଥର ସଉଦା ପକ୍କା । ଆପଣ ଯାନ୍ତୁ ନିଶ୍ଚିନ୍ତ ମନରେ ଶୋଇବେ। (ନେତା ପ୍ରସ୍ଥାନ) (ବାବାଜୀ ଧ୍ୟାନରେ ବସିଲେ କିଛି ସମୟପରେ ଆଉ ଗୋଟିଏ ଛାଇ ଆସିଲା)

ଓଝା - ବାବାଜୀ ନମସ୍କାର

ବାବାଜୀ - କିଏ ?

ଓଝା - ମୁଁ ଓଝା...

ବାବାଜୀ - ହଁ ମୁଁ ଜାଣେ। ଆସନ୍ତୁ! ବସନ୍ତୁ! ଏତେ ରାତିରେ ଏଠି ? କହନ୍ତୁ କ'ଣ କହିବେ।

ଓଝା - ବାବୁଲା ଆସିଥିଲା ବୋଧହୁଏ.... ? କ'ଣ ସବୁ ମୋ କଥା କହୁଥିଲାକି ?

ବାବାଜୀ - ବାବୁଲା କିଏ ମୁଁ ଜାଣିନି। କିନ୍ତୁ ଯୁବକସଂଘ President ଆସିଥିଲା। ହଁ ତୁମ କଥା ବି ସେ କହୁଥିଲେ.....

ଓଝା - ହଁ ସେଇ ବାବୁଲା । ପକ୍କା ବଦମାସ। ମୁଁ ଜାଣେ ସେ ମୋ କଥା କହୁଥିବ । କ'ଣ କହୁଥିଲା ? କହିଲେ ? ମୁଁ ରହିଁବି ଯଦି ଘଡିକେ ତା' ମୁଖା ଖୋଲିଦେବି । ସେ କଥାସେ ଜାଣିନି ବୋଧହୁଏ ?

ବାବାଜୀ - ତା'ଉପରେ ଏମିତି ରାଗୁଛ କାହିଁକି ? ସେ ତ କହୁଥିଲା ସେ ତୁମର ମୁଖା ଖୋଲି ଦେବ ବୋଲି। ତୁମେ କାଳେ ମିଛଟାରେ କାଳିସୀ ଲାଗିବାର ବାହାନା କରୁଛ ଆଉ ଲୋକଙ୍କୁ ମିଛ ସତ କହି ଠକୁଛ ?

ଓଝା - ହଁ ? ସେ ଏମିତି କହିଲା ? ବଦମାସ। କାହାପାଇଁ କରୁଛି ? ସେ କଥାତ ସେ କହିଲାନି? ତାକୁ ପଚରିଲେନି ସେ କଥା ?

ବାବାଜୀ - ସେ ନକହୁ ତୁମେ କହୁନ ? ଠାକୁରାଣୀଙ୍କୁ ସାକ୍ଷୀରଖି ତୁମେ ଏମିତି ମିଛି ସତ କାହିଁକି କହୁଛ କହିଲ ? ମହାପାପ ହେବନି।

ଓଝା - ନ କଲେ ମୋତେ ମାରିଦେବାର ଧମକ ଦେଉଛି। ମୋ ପିଲାଛୁଆଙ୍କ ଜୀବନ ନେଇଯିବ ବୋଲି କହୁଛି। ଆଉ ତା ଇସାରାରେ କାମ କଲେ ଧାନ, ଚାଉଳ ପଇସା ପତ୍ର କିଛି କିଛି ଦେଉଛି। ମୁଁ ଭଲରେ ଭଲରେ ଚଳିଯାଉଛି।

ବାବାଜୀ - ଠାକୁରାଣୀ ଙ୍କ ଅଭିଶାପ ଯଦି ପଡିବ ?

ଓଝା - କ'ଣ କରିବି କୁହନ୍ତୁ। ଏପଟେ ନକଲେ ରାବଣ ହାତରେ ମରିବି, ସେପଟେ କଲେ ରାମଚନ୍ଦ୍ରଙ୍କ ହାତରେ ମରିବି। ମୋ ଅବସ୍ଥା ଏବେ ରାମାୟଣର ସେ ମାରୀଚ ରାକ୍ଷସ ଭଳି । ଭାବୁଛି ଯେ ପାଷାଣ୍ଡ ହାତରେ ମରିବା ଅପେକ୍ଷା ଠାକୁରାଣୀଙ୍କ ହାତରେ ମରିବା ଢେରଭଲ। କ'ଣ କହୁଥିଲା କି ସେ ପାଜି, ବଜ୍ଜାତ ?

ବାବାଜୀ - କହୁଥିଲା ଓଝାକୁ ପୋତାଧନର ଖବର ଦେବେ ନାହିଁ

ଓଝା - ଆଉ ତାକୁ ଦେବ, ସେ ସବୁ ହଡପ କରି ଖାଇବ । କେତେ ଖାଇଲେ ଆଉ ତା ପେଟ ପୁରିବ ? ଗାଁ ସାରା ସମ୍ପତ୍ତି ସବୁ ଖାଇଲା। ସମସ୍ତଙ୍କର ଖାଇଲା । ତଥାପି ଲୋଭଛାଡୁନି।

ବାବାଜୀ - କ'ଣ ସେ ଏମିତି ଖାଇଗଲା କି ?

ଓଝା - ଗାଁ ପୋଖରୀ, ମେଳନ ପଡିଆ, ଭାଗବତ ଟୁଙ୍ଗି ସବୁ ତା'ରି ନାଁରେ କରିନେଇଛି। ବିଜୁପକାଘର, ଇନ୍ଦିରା ଆବାସ କରିଦେବ କହି ସମସ୍ତଙ୍କଠାରୁ ପଇସା ନେଇ ଖାଉଛି। ଘରେ ଘରେ ପକ୍କା ପାଇଖାନା ଯୋଜନାରେ ସମସ୍ତଙ୍କ ଠାରୁ ଟିପଚିହ୍ନ ନେଇ ଟଙ୍କା ଉଠେଇ ଖାଉଛି। ତାକୁ ପଇସା ନିଶା ଲାଗିଛି।

ବାବାଜୀ - ସେ ଏମିତି କରିପାରୁଛି କେମିତି ? ତା'ନାଁରେ କେହି ନାଲିସ୍ କରୁନ କାହିଁକି ?

ଓଝା - ସେଇ ଏକା ଦି ଅକ୍ଷର ପାଠ ପଢିଛି। ଆଉ ଏଗାଁରେ ସବୁ ମୁର୍ଖ। ଟିପଚିହ୍ନ ବାଲା । ସେମାନଙ୍କୁ ଯାହା ବୁଝେଇ ଦେଲେ ସେମାନେ ସହି..... ଟୋକା ଟାକଳିଆ କେତେ ଜଣଙ୍କୁ ମଦ ମାଉଁସ ଦେଇ ପିଆଦା ଭଳି ରଖିଛି । ଦରକାର ବେଳେ ଏମାନଙ୍କୁ ଲଗେଇ କାହାକୁ ଦି, ଚରି ପାହାର ପକେଇ ଦେଉଛି ? ଲୋକେ ଡରରେ ପାଟି ଫିଟାଉ ନାହାଁନ୍ତି। ସରକାରଙ୍କ କାନକୁ କଥା ନେବାକୁ ତାକତ୍ କାହାର ଅଛି ଯେ ଯିବ।

ବାବାଜୀ - ତୁମେ ଯାଉନ.....

ଓଝା - ମୋତେ କ'ଣ ଲେଖାଲେଖି ବେଶୀ ଆସେ ? ଖାଲି ନିଜ ନାମର ଦସ୍ତଖତଟା ଶିଖିଛି। ନହେଲେ ଟିପ ଚିହ୍ନରେ କାମ ଚଳେଇନିଏ। ସେଥିପାଇଁ ଲୋକ ତାକୁ ୱାର୍ଡମେମ୍ବର କରିଛନ୍ତି। ଲୋକମାନଙ୍କ

ପାଇଁ ସରକାରଙ୍କ ସାଙ୍ଗରେ ସେ କଥା ହୁଏ। ଆଉ ସରକାର ଯାହା କଥା କହୁଛନ୍ତି ସେ ଆସି ଆମକୁ କହୁଛି। ସେଥିପାଇଁ ଗାଁ ବାଲା ତାକୁ ମୁରବି କରିଛନ୍ତି।

ବାବାଜୀ - ତୁମ ଉପରେ ତା'ର ଏତେ ରାଗ କାହିଁକି ?

ଓଝା - ରାଗ ନୁହେଁ, ମୋତେ ତାର ଡର। କଥାରେ କହନ୍ତି ନି ବାଘକୁ ଫାଗର ଡର ଖାଉଛି। ଯେତେବେଳେ ଗାଁ ଲୋକକୁ ତା'ପାଇଁ ମତେଇବାକୁ ଦରକାର ପଡିବ ସେ ମୋ ସାହାଯ୍ୟ ଲୋଡିବ।

ବାବାଜୀ - କି ସାହାଯ୍ୟ ?

ଓଝା - ଠାକୁରାଣୀଙ୍କ ନାଁରେ କାଳିସୀ ଲଗାଇ ତାରିପକ୍ଷର କଥା ଗୁଡା ସବୁ ମୁଁ କହିବି । ଆଉ ଲୋକେ ତାକୁ ବିଶ୍ୱାସ କରି ଚୁପ ହୋଇ ଭାଗ୍ୟକୁ ଆଦରି ବସିବେ।

ବାବାଜୀ - ଓ...ଆଛା ଆଛା- ବାଃ ଖୁବ୍ ଚମତ୍କାର ତୁମର ବୁଦ୍ଧି। ବୁଦ୍ଧି ତ ନୁହେଁ ଦୁର୍ବୁଦ୍ଧି । ଠାକୁର ଠାକୁରାଣୀଙ୍କ ନାଁରେ ଏମିତି ରୋଜଗାର ତ କେଉଁ କାଳୁ ଚାଲୁଛି.... ଧର୍ମର ନାଁ ଦେଇ ଅଧର୍ମ କରିବା କିଛି ନୂଆ କଥା ନୁହେଁ ଅଥବା ଦୃଷ୍ଟାନ୍ତର ବି ଅଭାବ ନାହିଁ। ତଥାପି ଧର୍ମ ପାଖରେ ବହୁଶିକ୍ଷିତ ସତ୍ୟ ମଣିଷ ବି ଯେମିତି ଅସହାୟ ହୋଇ ପଡନ୍ତି। ମୁଁ ବୁଝିପାରେନା ଯେ କାହିଁକି ଏମିତି ହୁଏ ? ଛାଡ ସେ କଥା। କୁହ କ'ଣ ପାଇଁ ଆସିଥିଲ ?

ଓଝା - ମୋର କିଛି ଧନ ଦରକାର।

ବାବାଜୀ - ମୁଁ ତ ବାବାଜୀ ଲୋକ। ମାଗି ଖାଉଛି ନ ହେଲେ ଉପାସ ରହୁଛି। ମୋ ପାଖରେ ବା ଧନ କାହିଁ।

ଓଝା - ଆପଣଙ୍କ ଧନ ନୁହେଁ।

ବାବାଜୀ - ଓ ପୋତାଧନ କଥା ତାହେଲେ ଆପଣ କହୁଛନ୍ତି । କେତେ ଦରକାର କହନ୍ତୁ।

ଓଝା - ଯାହାଦେବେ....

ବାବାଜୀ - ଗୋଟିଏ ମାଠିଆ ହେଲେ ଚଳିବ ?

ଓଝା - ଏତେ ଧନ ସତରେ ଆପଣ କ'ଣ ମୋତେ ଦେବେ ?

ବାବାଜୀ - ନ ଦେବି କାହିଁକି ? ସେଇଟା କେଉଁ ମୋର ବୋପାଙ୍କର ଅର୍ଜିତ ଧନ ଯେ ଦେବାରେ କୁଣ୍ଠା କରିବି ? କିନ୍ତୁ ମୋ ପାଇଁ ଆପଣଙ୍କୁ ଗୋଟିଏ କାମ କରିବାକୁ ପଡିବ ? ରାଜି ହେଲେ ମିଳିବ ?

ଓଝା - କ'ଣ କରିବି...

ବାବାଜୀ - ଏଣିକି ସତ କହିବ। ଗାଁରେ ବାବୁଲି ଯାହା ଯାହାସବୁ କରୁଛି ସବୁ ସତ କହିବ।

ଓଝା - ବାବୁଲିମୋତେ ମାରିପକାଇବ।

ବାବାଜୀ - ତୁମକୁ ରକ୍ଷା କରିବା ଦାୟିତ୍ୱ ମୋର। ସତ୍ୟର କେବେ ମୃତ୍ୟୁ ହୁଏନା । ମାଙ୍କ ସେବା, ପୂଜା କରୁଛ। ସବୁବେଳେ ସତ୍ୟର ଜୟ, ଧର୍ମର ଜୟ ହୁଏ ବୋଲି ଜାଣିନ ?

ଓଝା - ସତ କହିବି ଯେ କାହାକୁ କହିବି ?

ବାବାଜୀ - କାହାକୁ କହିବ । କେବେ କହିବ ଆଉ କେମିତି ସେଇସବୁ ସତ୍ୟ କହିବାକୁ ପଡିବ । ମୁଁ ତୁମକୁ ଠିକ୍ ସମୟରେ କହିବି, କିନ୍ତୁ ସେପର୍ଯ୍ୟନ୍ତ ଆଜିର କଥା ଗୋପନ ରଖିବ । ନହେଲେ ତୁମେ ଭୋଗିବ। ମୁଁ ଦାୟୀ ରହିବି ନାହିଁ।

ଓଝା - ଠିକ୍ ଅଛି....

ବାବାଜୀ - ଏଥର ଯାଅ ରାତି ପାହି ଆସୁଛି, କିଏ କାଳେ ଦେଖିବ (ଓଝା ପ୍ରସ୍ଥାନ)। ଆରେ ଉଠରେ (ବାବାଜୀ ଗୀତ ଗାଇବେ)

"ପାହିଲା ଅନ୍ଧାର ରଜନୀ ଉଠଉଠ ବାଳକେ,
ନବୀନ ପ୍ରଭାତ ସମୟ ଏବେ ଗାଅ ପୁଲକେ।"

(ସକାଳ ହେଲା) (ବାବାଜୀ କିମ୍ବା ତାଙ୍କ ଚେଲା ଦିଜଣ ନାହାଁନ୍ତି)

## ୫ମ ଦୃଶ୍ୟ

ଯୁବକ-୨ - ଧାଇଁ ଆସ ହୋ.... ଧାଇଁ ଆସ (ଅନ୍ୟମାନେ ଆସିଲେ) ଅନ୍ୟମାନେ- କିରେ କ'ଣ ହୋଇଛି ?

ଯୁବକ -୩- - ଏମିତି ହାଭଳି ଖାଉଛୁ କାହିଁକି ?

ଯୁବକ-୨ - ଦେଖିପାରୁନ ତାଟି ମେଲା କୁ ଦୁଆର ଖୋଲା ବାବାଜୀ ତାଙ୍କ ଚେଲା ଫେରାର।

ଯୁବକ-୧ - ସତେତ ସମସ୍ତେ ଉଭାନ । କ'ଣ କରିବା ? ଚାଲ ପୋଲିସରେ ଖବର ଦେବା..।

ନେତା - ଆବେ ଚୁପ୍। ପୋଲିସ କ'ଣ କରିବ ?

ଯୁବକ-୩ - ପୋଲିସ ତାଙ୍କୁ ଖୋଜି ଧରିବ....

ନେତା - ପୋଲିସର ଆଉ କିଛି କାମ ନାହିଁ। ଲୋକଙ୍କୁ ଖୋଜିବ । ଆମେ ଖୋଜି ପାରିବାନି....ଡାକ ସେ ଓଝାଙ୍କୁ ଡାକ ।

ଓଝା - ମୁଁ ପରା ଏଇଠି ମୋତେ ଡାକି ପଠାଉଛ କ'ଣ ? ମୁଁ କ'ଣ କରିବି ? କ'ଣ କାଳିସୀ ହୋଇ ତାଙ୍କୁ ଖୋଜିବି ?

ନେତା - ମୁଁ କ'ଣ ସେ କଥା କହୁଛି ?

ଓଝା - ଆଉ କ'ଣ କହୁଛ ଯେ...

ନେତା - ଆଗ କଥା ନ ଶୁଣି ବାଉଳା ହେଉଛୁ କାହିଁକି। ନଈ ନଦେଖି ଲଙ୍ଗଳା ହେବା ଗୁଣ ତୋର ଗଲାନି ବୁଝିଲୁ।

ଓଝା - ହଉ କ'ଣ କହୁଛ କୁହ।

ନେତା - (ଦୁହେଁ ମଞ୍ଚର ସାମ୍ନା ଭାଗକୁ ଆସି ଏକାନ୍ତରେ ଚୁପ୍ ଚୁପ୍ କଥାବାର୍ତ୍ତା ହେଲେ) କାଲି ରାତିରେ ସେମାନଙ୍କୁ ଦେଖିଥିଲ କି ?

ଓଝା - ଦେଖିଥିଲେ ତୁମେ ଦେଖିଥିବ ? ତୁମେ କଥା ହୋଇଥିବ ? ତୁମେ ତ ତାଙ୍କୁ ଏଇ କ୍ଲବ ଘରେ ଅତିଥି କରି ରଖିଥିଲ ନା । ତୁମେ ଜାଣିଥିବ। ମୁଁ ମୋର ଏଠୁ ଗଲିତ ଖାଇପିଇ ଶୋଇଲି। ମୋର କ'ଣ ଚିନ୍ତା। ପର କଥା ପରଗୋହି ଖୋଳିବାକୁ ମୋର ବେଳ କାହିଁ।

ନେତା - ଏବେ କ'ଣ କରାଯିବ କୁହ...ଆଚ୍ଛା ସେ ବାବାଜୀ ଯୋଉଁ ପୋତା ଧନ କଥା କହୁଥିଲେ। ସେ ସବୁକୁ ସିଏ ନିଜେ ନେଇ ପଳେଇ ଯାଇ ନାହାଁନ୍ତି ତ ?

ଓଝା - ହୋଇଥିବ ମୁଁ କିମିତି କରିବି ? ତେବେ ସେ କହୁଥିଲେ ପରା ମା କାଳେ ତାଙ୍କୁ ପୋତାଧନ କେଉଁଠି ଅଛି ସେ ବିଷୟରେ କିଛି କହି ନାହାନ୍ତି । ମାଙ୍କ ବାର୍ଷିକ ଉତ୍ସବ ଦିନ କହିବେ ବୋଲି କହିଛନ୍ତି।

ନେତା - ସେ ଯଦିମିଛ କହୁଥିବେ... ? ସେକଥା କିଏ ଜାଣିବ ?

ଓଝା - କିଏ ଏଠି ସତିଆ କି ?

ନେତା - କ'ଣ କହିଲୁ....

ଓଝା - ତୁମେ କାଲି ରାତିରେ କ'ଣ ବାବାଜୀଙ୍କୁ ଦେଖା ହୋଇଥିଲ ?

ନେତା - (ଥଥମମ ହୋଇ) କାହିଁ ନା ତ।

ଓଝା - ସେଇଆ ପରା ମୁଁ କହୁଛି । କିଏ ଏଠି ଆଉ ଷୋହଳ ପଣ ସିଡିଆକି ?

ନେତା - ମୁଁ କ'ଣ ମିଛ କହିଲି ଶୁଣେ ?

ଓଝା - ତୁମେ କାଲି ରାତିରେ ଲୁଚିଲୁଚି ଆସି ବାବାଜୀଙ୍କୁ ଦେଖା କରିନଥିଲ ?

ନେତା - ନା...ବିଲକୁଲ ନୁହେଁ....ତୁମକୁ କିଏ କହିଲା ପ୍ରମାଣ କଲ ଦେଖିବା...

ଓଝା - ପ୍ରମାଣ କରିବି ? କାହାକୁ ଡାକିବି ଯେ ପ୍ରମାଣ କରିବି ?

ନେତା - କିଏ ଦେଖିଛି ପରା ? ତାକୁ ଡାକୁନ ପ୍ରମାଣ କରିବା-

ଓଝା - କଥାରେ କହିଛି ପରା ଯାହା ନ ଦେଖିବ ଦୁଇ ନୟନେ ପରତେ ନଯିବ ଗୁରୁବଚନେ। ମୁଁ ପରା ନିଜର ଏଇ ଦୁଇଆଖି ରେ ଦେଖିଛି ତୁମେ କଳା ଲଦର ଖଣ୍ଡେ ଘୋଡେଇ ହେଇ ନୁସୁର ପୁସୁର ହୋଇ ଗାଁ ଦାଣ୍ଡ ରାସ୍ତାରେ ଚାଲିଯାଉଥିଲ।

ନେତା - କେତେବେଳେ କହିବ ?

ଓଝା - ମୁଁ କ'ଣ ଘଡ଼ି ଦେଖି କହୁଛି ସମୟ ସେତେବେଳେ ଅଧାରାତି ହୋଇ ଥିବ କି କ'ଣ ତୁମେ ଆଉ କଥା ବାଆଁରେଇଲେ ହବନି-ବୁଝିଲ ମୋ ଆଖିଟି।

ନେତା - ଠିକ୍ ଅଛି । ଅଧରାତିରେ ତୁମେ ମୋତେ ଏଠି ଦେଖିଲ ଯଦି । ତୁମେ ସେତେବେଳେ ଏଠି କ'ଣ କରୁଥିଲ ?

ଓଝା - (ଥଥମମ) ମୁଁ ପରିସ୍ରା କରିବାକୁ ଆସିଥିଲି...

ନେତା - ଆଉ ମିଛ କୁହନା। ପରିସ୍ରା କରିବାକୁ ୩ଟି ଘରଡେଇଁ ଏଇ ମନ୍ଦିର ଆଗକୁ ରାତି ଅଧରେ ଆସିଥିଲ ନୁହେଁ ? ଶୁଣ ଆଉ କଥା ବଢାନି। ଗାଁ ଲୋକସବୁ ଜାଣିଲେ ଦିଜଣ ଯାକ ବିପଦରେ ପଡିବା । ଏବେ କୁହ କ'ଣ କରିବା ?

ଓଝା - ସେମାନେ ଆମର ଜିନିଷ ପତ୍ର ମାନେ ଠାକୁରାଣୀଙ୍କର କି ଯୁବକ ସଂଘର କିଛି ଜିନିଷ ପତ୍ର ନେଇଛନ୍ତି କି ?

ନେତା - କ'ଣ ଏଠି ଥିଲା ଯେ ନେଇଥିବେ।

ଓଝା - ତା'ହେଲେ ଚୁପ୍ ଚାପ ବସି ପଡିବା। ପୋଲିସ କୁ ଖବର କଲେ ଖୋଳ ତାଡ ହେବ। ବହୁତ ପୁରୁଣା କଥା ବାହାରି ପଡିବ-ଆମେ ବିପଦରେ ପଡିଯିବା।

ନେତା - ଠିକ୍ କଥା, ସେଇ କଥା ତ ମୁଁ କହୁଛି। ତୁମେ ଟିକିଏ ପୂଜା ପୂଜି କରି କ'ଣ ଟିକିଏ ଯାତୁ ସ୍ୟାତୁ କହିଦେଲେ ତ କଥାଟା ଥରକରେ ଛିଡି ଯାଆନ୍ତା...

ଓଝା - କେତେ ଆଉ ମିଛ କହିବି।

ନେତା - କ'ଣ ଆଉ କରିବା କହିଲ ଏମାନଙ୍କୁ କ'ଣ ସତ କହିବ ?

ଓଝା - ମା ଲୋ...ତୁ ହିଁ ସତ । ମିଛି କହିବିନି ଯେ ନିଜ ବେକରେ ଟାଙ୍ଗିଆଘେଟ ନିଜେ ମାରିବି। ତୁ ମୋତେ ମାଫ କରିବୁ।

ନେତା - ଆଚ୍ଛା ଶୁଣ ଶୁଣ। ମୁଁ ଓଝାଙ୍କ ସାଙ୍ଗରେ କଥାହେଲି ସେ ଆଜି ଶୁଦ୍ଧ ପବିତ୍ର ହୋଇ ମାଜଣା କରି ମାଙ୍କ ପାଖରେ ପୂଜା କରିବେ। ସେମାନେ ଆପେ ଆପେ ଆସି କିମିତି ଆମକୁ ଧରା ଦେବେ ମାଆ ସେ ବ୍ୟବସ୍ଥା କରିବେ। ଏବେ ଚାଲ ପୂଜାର ବ୍ୟବସ୍ଥା କରିବା.....

ଓଝା - ଶୁଣ ଶୁଣ - ବାବୁ ଆଜିର କଥା ମୁଁ ଧ୍ୟାନରେ ଧ୍ୟାନରେ ବସି କହିଦେବି ତୁମେ ମାନେ ବରଂ ବାର୍ଷିକ ଉତ୍ସବର ଆୟୋଜନ କର ସେହିଦିନ ହୁଏତ ମାଆ ଖୁସି ହୋଇ ଗୁପ୍ତ ଧନର ସନ୍ଧାନ ଦେଇ ପାରନ୍ତି।

ନେତା - (ଚୁପ ଚୁପ୍) ଏ କଥା ତ ମୋତେ କାହିଁ କହି ନ ଥିଲ।

ଓଝା - କହୁ କହୁ ପାଟିରୁ ବାହାରି ଗଲାନା। ସତରେ କ'ଣ ସେମିତି ହେବ ବୋଲି ମୁଁ ଜାଣିଛି।

ନେତା - ଯଦି ଗୁପ୍ତ ଧନ କଥା ନହେଲା।

ଓଝା - ନ ହେଲା ନାହିଁ। ତଥାପି ଛାଗ ବଳି ଖଣ୍ଡେ ହେଲେ ଗାଁ ସାରା ଲୋକ ଖୁସିରେ ପଙ୍ଗତ ଭୋଜନ କରିବେନା ନାହିଁ।

ନେତା - ଖର୍ଚ୍ଚ କିଏ ଦେବ ?

ଓଝା - ଗାଁ ଫଣ୍ଡରୁ ଖର୍ଚ୍ଚ ହେବ।

ନେତା - ଫଣ୍ଡ କ'ଣ ତୁମେ କରିଥିଲ ନା ଫଣ୍ଡରେ କେତେ କ'ଣ ପଇସା ଅଛି ତୁମେ ଜାଣିଛ ?

ଓଝା - ନଥିଲେ ତୁମେ ଖର୍ଚ୍ଚ କରିବ। ଗାଁ ସମ୍ପତ୍ତି, ଠାକୁରାଣୀ ଙ୍କ ଜମି ସବୁ ଏତେ ଖାଉଛ ବର୍ଷକରେ ଓଳିଏ ଗାଁ ବାଲାଙ୍କୁ ଖାଇବାକୁ ଦିଅ ଧର୍ମ ହେବ। (ସମସ୍ତଙ୍କୁ କହିଲା) ଶୁଣ ଶୁଣ ସେଦିନ ମାଙ୍କ ଆଗରେ ଛାଗବଳି ହେବ। ପଙ୍ଗତ ହେବ । ଖର୍ଚ୍ଚ ଆମ ଗାଁର ମାମଲତ୍କାର ମାନେ ମୁଖିଆ ଦେବେ । ବୋଲ ଆନନ୍ଦେ ଏକବାର ହରିବୋଲ।

ସମସ୍ତେ - ହରିବୋଲ....

ଯୁବକ - (୧+୨+୩) ଆମର ନେତା ସଭିଙ୍କ ନେତା ବାବୁଲି ଭାଇ ଜିନ୍ଦାବାଦ

ନେତା - ଭଲ ଫସେଇଲ ମୋତେ। (ଓଝା ହସୁଛି ଅନ୍ଧାର)

## ୬ଷ୍ଠ ଦୃଶ୍ୟ

**(ଗାଁରେ ଠାକୁରାଣୀଙ୍କର ବାର୍ଷିକ ଉତ୍ସବର ଆୟୋଜନ। ଛେଳିଟିଏ ବନ୍ଧା ହୋଇଛି ତା' ଘରିପରେ ଲୋକ ଭିଡ଼...)**

ଯୁବକ-୧ - ଛେଳିଟା ଛନଛନିଆ ହୋଇଛି। କେତେ ମାଉଁସ ହେବ କହତ-

ଯୁବକ-୨ - ୨୦ କେ.ଜି ଖଣ୍ଡେ ହେବ....

ଯୁବକ-୩ - ନା ନା ..୧୪/୧୫ କେଜି ହେବ....

ଯୁବକ-୧ - ସମସ୍ତଙ୍କୁ ଅଣ୍ଟିବ ତ ?

ଯୁବକ-୨ - ହଁ ମ ବଳିବ ?

ଯୁବକ-୧ - ବଳିଲେ ଚିନ୍ତା ନାହିଁ ଆମେ ରେଡି ଅଛୁ ?

ଯୁବକ-୩ - ନ ବଳିବ କେମିତି ? ଆମେ ବଳେଇ ଦେବାନି। ଆରେ ପରଷିବା ଲୋକତ ଆମେ....

ଓଝା - ଆରେ ସେ ଛେଳି ଘରିପରେ ଘେରି ଯାଇଛ କ'ଣ ? କ'ଣ କଞ୍ଚା ଖେଦେଇ ଦବକି ? ଆରେ ମାଙ୍କୁ ଆଗ ଭୋଗ ଲାଗି ହେଉ। ସେ ପର୍ଯ୍ୟନ୍ତ ଅପେକ୍ଷା କର....

ନେତା-୧ - ଶୀଘ୍ର ଶୀଘ୍ର ପୂଜା ଆରମ୍ଭ କରନ୍ତୁ ?

ଓଝା - ପୂଜାର ସଜବାଜ କରିବ ଯାଅ...ପୂଜା ଆଗେ ଆରମ୍ଭ ହେଉ ତା'ପରେ ସରିବା କଥା ଦେଖାଯିବନି...

ନେତା - (ପ୍ରବେଶୀ) ମୁଁ ଜାଣେ ପରା ଉଖୁଡା ଯେଉଁଠି ପିମ୍ପୁଡି ସେଇଠି । ଯାଅ ଯାଇ ପୂଜା ପାଇଁ ଆୟୋଜନ କର...ସିଆଡେ ରୋଷେଇଆ ଆସି ପହଞ୍ଚି ଗଲେଣି। ତାର ସବୁ ଯୋଗାଡ ଯନ୍ତ୍ର କରି ଦେଇ ଆସିଲି।

ଡାଲି ବସେଇ ଦେଇଛି। ଘାଣ୍ଟ ଆଉ ଖଟା ପାଇଁ କଟା କଟି ଚାଲିଛି ତାପରେ ମାଂସ ବସିବ...ସବା ଶେଷରେ ଅନ୍ନ...

ଓଝା - ଠାକୁରାଣୀଙ୍କର ପୂଜା ସାମଗ୍ରୀ ସଜବାଜ ହେଲାଣି ନା ନାହିଁ । ବାରିକିଆଣୀ କୁଆଡେ ଗଲା କେଜାଣି...

ନେତା - ତୁମେ Ready ହୋଇ ଆସିଛ ନା ନାହିଁ।

ଓଝା - ଗାଧୁଆପାଧୁଆ ସାରି ଚନ୍ଦନ ତିଳକ ନାଇଁ ମୁଁ ପୂରା ପ୍ରସ୍ତୁତ। ବାରିକିଆଣି ଖାଲି ହଳଦୀ ପାଣି ସଜେଇ ଦେଲେ ମାଜଣା ଆରମ୍ଭ କରିବି.... (ଦେଖାଗଲା... ବାରିକିଆଣି ହଳଦୀ ପାଣି ଆଉ ୨ଟି ମନ୍ଦାର ଫୁଲମାଳ ଧରି ଆସିଲା ଓ ଓଝାଙ୍କୁ ଦେଲା)

ବାରିକିଆଣୀ - ନିଅ ହଳଦୀପାଣି ଆଉ ମାଳ-୨ଟି ଗୋଟିଏ ମାଆଙ୍କର ଆଉ ଗୋଟିଏ ବଳିର ବେକରେ ପଡିବ)

ଓଝା - କିରେ ତୁ ତ ଆଜିପୂରା ହଳଦିଆ ଶାଢୀ ପିନ୍ଧି କନିଆଁ ବେଶରେ ପଳେଇ ଆଇଛୁ। କଥା କ'ଣ?

ବାରିକିଆଣୀ - କଥା ତୋ ମୁଣ୍ଡ ଗଣ୍ଡି। ଏଇ ସଭାଭିତରେ ଟାହି ଟାପରା କରୁଛୁ, ତୋତେ ଲାଜ ସରମ ନାହିଁ। (ଛେଳି ଅଭିନେତା) ଗୋଟିଏ ମାଳ ଟାଣି ନେଇଖାଇଗଲା) ଆଲୋ ଆଲୋ ହାଣ ଖାଇବାକୁ ଯାଉଛି। ୟାକୁବି ତର ସହୁନି ଯେ ମୋ ହାତରୁ ଫୁଲମାଳ ନେଇ ଖାଇ ଯାଉଛି। (ଛୋଟ ପାଖରୁ ମାଳ ଛଡ଼େଇ ଆଣିବ) ନେ ନେ ମାଳ ଧର ପାଣିଧର...

ଓଝା - ମୋତେ ଗୋଟିଏ ମାଳ ଦେ- ବାକି ସେ ମାଳ ଆଉ ହଳଦୀ ପାଣି ନେଇ ମନ୍ଦିରକୁ ଚାଲ (ଗୀତଭଳି) ଧିରି ପାଦ ଥାପି ଚାଲୁଥିବୁଲୋ ବାରିକିଆଣି, ନ ହେଲେ ମନ୍ଦିର ଦୁଲୁକି ଯିବରେ ବାରିକି ଆଣି।

ବାରିକାଣୀ - ରହ ରହରେ ଓଝା ତୁମ ଘରଣୀଙ୍କ କାନରେ ଖବରଟା ପକେଇ ଦେଉଛି ଯେ ସଞ୍ଜକୁ ଏଇ ଓଝା ସାଆନ୍ତଙ୍କର ପିଠିଟା ଏମିତି ଦୁଲୁକି ଯିବ ଯେ। ଦି ଦିନ ବିଛଣାରୁ ଉଠି ପାରିବନି।
(ଓଝା ଛେଳିବେକରେ ମାଳ ପିନ୍ଧାଉଅଛି ପ୍ରବେଶ କଲେ)
(ପୋଲିସ, BDO- ଇତ୍ୟାଦି)

ବାବାଜୀ - ଏଇଟା ସେଇ ଗାଁ। ଏଇ ସେଇ ଓଝା ବଳି ଦେବାକୁ ଛେଳିକୁ ମାଳ ପିନ୍ଧାଉଛି ଆଉ ଏଇ ସେଇ ନେତା (ବାବୁଲି) ସରକାରଙ୍କ ସବୁ ଜନହିତକର ଯୋଜନାକୁ ନିଜ ପକେଟରେ ପୁରେଇ ଆତ୍ମସାତ୍ କରିଛି? ଆପଣ ମାନେ ଗାଁ ବାଲାଙ୍କୁ ପଚାରି ବୁଝନ୍ତୁ।

Police - ଆଗ ଏ ଛେଳିକୁ ଖୋଲିଦେ ଆଉ ଏ ଓଝାକୁ ସେଇ ଦଉଡିରେ ବାନ୍ଧି ତା'ବେକରେ ଫୁଲମାଳ ପିନ୍ଧେଇଦେ। (ସେମିତି କରାଗଲା)

ଓଝା - ତୁମେ କ'ଣ ମୋତେ ହାଣିବ ନା କ'ଣ?

Police - ନା- ମାଙ୍କୁ ଭୋଗ ଚଢେଇବୁ। ତୋ ଜୀବନ ଧନ୍ୟ ହୋଇ ଯିବରେ ଓଝା।

ଓଝା - ମାତେ ମାଫ କରନ୍ତୁ ହଜୁର ଏଇ ଗାଁ ମୁଖିଆ ମୋତେ ବାଧ୍ୟ କଲାରୁ ମୁଁ ଏସବୁ କରିବାକୁ ବାଧ୍ୟ ହେଲି।

Police - ତାକୁ ଧର....(ବାବୁଲାକୁ ଧରିଲେ) ତୁ ଏ ଗାଁର ମୁଖିଆ, ମାମଲତ କାର...ହଉହଉ। (BDOଙ୍କୁ) Sir କ'ଣ ପଚାରିବେ ପଚାରନ୍ତୁ....

BDO - ଆଚ୍ଛା ତୁମ ଭିତରୁ ବିଜୁପକ୍କା ଘର ଯୋଜନାରେ କିଏ କିଏ ସବୁ ପଇସା ପାଇଛ କହିଲ...(ସମସ୍ତେ ନିରବ) ଇନ୍ଦିରାଆବାସ ଯୋଜନାରେ କିଏ କିଏ ପଇସା ନେଇଛ....(ନିରବ) ସ୍ୱଚ୍ଛ ଭାରତ ଅଭିଯାନରେ ଶୌଚାଳୟ ମାନେ ପାଇଖାନା ପାଇଁ କିଏ କିଏ ଟଙ୍କା ଉଠେଇଛ? (ନିରବ) କିରେ କେହି କିଛି କହୁନା କାହିଁକି? ତୁମେ କେହି କ'ଣ ସରକାରୀ ପଇସା ପାଇନାହଁ?

ସମସ୍ତେ - ନା....

BDO - ହଉହଉ ମୁଁ ନାମ ପଢୁଛି ଶୁଣ (ବିଜୁପକ୍କା ଘର ଯୋଜନାରେ) ନଖିଆ ଭୋଇ, ମାର୍କଣ୍ଡ ଭୋଇ, ଅନାମ ଭୋଇ, ମଦନ ସେଠି, ଶଙ୍କରା ସେଠି– ତୁମେ ସବୁ ୩୦ ହଜାର ଟଙ୍କା ଲେଖାଏଁ ନେଇଛ.... ତା ସାଙ୍ଗକୁ ପକ୍କା ପାଇଖାନା ପାଇଁ ୧୦ ହଜାର ଟଙ୍କା ।

ସମସ୍ତେ - ନା ଆମେ ନେଇନୁ କି ଜାଣିନୁ-

BDO - ଏଠି ଟିପ ଚିହ୍ନ ଲଗେଇ ପଇସା ନେଇଛ। ଏଇ ଦେଖ ଏ.ଟିପ ଚିହ୍ନ କାହାର ?

ସମସ୍ତେ - ଆମର । ଆମେ ଏ କାଗଜରେ ଟିପ ଚିହ୍ନ ଦେଇଛୁ ସତ କିନ୍ତୁ ପଇସା ପାଇନୁ....

ବାବାଜୀ - ତୁମ ପଇସା ସବୁ ଏଇ ବାବୁଲି ହଡପ କରିଛି।

BDO - ସେମିତି ଇନ୍ଦିରା ଆବାସ ଯୋଜନାରେ ମୁକୁଳା ହାତୀ, ପରମାଣିକ ବାଘ, ମକରା ଓଝା-ଏମିତି ୧୦ ଜଣ ୩୦ ହଜାର ଲେଖା ଟଙ୍କା ଉଠେଇଛି ଓ ପାଇଖାନା ପାଇଁ ଦଶ ହଜାର ଲେଖା ନେଇଛି । ଆମ ରେକର୍ଡ କହୁଛି ଯେ ତୁମ ଗାଁରେ ୨୨ଟା ଘର । ସେଥିରୁ ୨୦ ଘର ପକ୍କା ଘର । ୨୨ ଟି ଘରେ ପାଇଖାନା ରହିବା କଥା କିନ୍ତୁ ଗାଁ ରେ ତ ସେମିତି କିଛି ମୁଁ ଦେଖୁନି।

ବାବାଜୀ - ଗାଁ ରେ ୨ଟା ପକାଘର ଅଛି। ଗୋଟିଏ ବାବୁଲାର ଅନ୍ୟଟି ଓଝାର। ଗୋଟିଏ ପକ୍କା ପାଇଖାନା ଅଛି ସେଇଟା ସେଇ ବାବୁଲାର ଆଉ ସମସ୍ତଙ୍କ ପାଇଖାନା ହେଉଛି ନଈ କୂଳ, ଗାଁ ଦାଣ୍ଡ । ଘରିଆଡେ ମଇଳା ଅଇଳା । ଅଳିଆଗଦା କରି ଏମାନେ ଯେମିତି ଅଛନ୍ତି କେତେବେଳେ ହଇଜା, ମେଲେରିଆ, ଡେଙ୍ଗୁ ହୋଇ ମହାମାରୀ ଆକାର ଧାରଣ କରିବ କହିହେବ ନାହିଁ। ସବୁରି ମୂଳରେ ଏଇ ବୋର ଝାଞ୍ଜିର କରାମତି । ଏମିତି ମାଡି ଗଲାଣି ଯେ ପଥର ତୁଠ ନିର୍ମଳ ଜଳଥିବା ପୋଖରୀ ସବୁ ପୋତି ହୋଇଗଲାଣି। ସେଥିରୁ ଆଉ ପାଣି ବ୍ୟବହାର କରିବା ଯୋଗ୍ୟ ହୋଇନାହିଁ କି ସେଥିରେ ମାଛ ବେଙ୍ଗ ବି ନାହାନ୍ତି । ୟାର ପ୍ରତିକାର କରନ୍ତୁ ଆଜ୍ଞା, ନହେଲେ ସରକାରଙ୍କର ସବୁ ଜନହିତକର ଯୋଜନା ଏମିତି ବାଟମାରଣାରେ ଯିବ।

BDO - ଆରେ ତୁମେ ମାନେ ତ ପାଠ ଦିଅକ୍ଷର ପଢିଲ ନାହିଁ, କି ପିଲାମାନଙ୍କୁ ପଢେଇଲ ନାହିଁ । କ'ଣ ଜାଣିବ ସରକାରୀ କାଗଜରେ କ'ଣ ଲେଖା ହେଇଛି । ତୁମକୁ ଇଏ ୟାଡୁ ସ୍ୟାଡୁ କହି ଟିପଚିହ୍ନ ନେଇ ସବୁ ଯୋଜନାକୁ ଭଣ୍ଡୁର କରୁଛନ୍ତି ଏମାନେ। ଠିକ୍ ଅଛି ମୁଁ ଏହାର ତଦନ୍ତ ନିର୍ଦ୍ଦେଶ ଦେଉଛି ଯିଏ ଯିଏ ସବୁ ପଇସା ଖାଇଥିବେ ସମସ୍ତେ ଦଣ୍ଡ ପାଇବେ। ଅତିଶୀଘ୍ର ମୁଁ ୟାର ପ୍ରତିକାର କରିବି ।

ବାବାଜୀ - ଗାଁକୁ ଆଗ ସଡକ ଆଉ ସ୍କୁଲ ଆଉ ଡାକ୍ତରଖାନା ଯୋଗାଇଦେବାର ବ୍ୟବସ୍ଥା କରନ୍ତୁ Sir ତା ସାଙ୍ଗରେ ମାଗଣା ପାଠ ପଢିବାର ସୁବିଧା କରାଇ ଦିଅନ୍ତୁ- ବାକି କଥା ମୁଁ ଆପଣଙ୍କୁ ସାହାଯ୍ୟ କରିବି ସାର । ଗାଁକୁ ଅନ୍ଧ ବିଶ୍ୱାସରୁ ମୁକ୍ତ କରି ସରକାରଙ୍କର ସବୁ ଜନହିତକର ଯୋଜନାକୁ କାର୍ଯ୍ୟକାରୀ କରାଇ ତା'ପରେ ଯାଇ ଏ ଗାଁ ଛାଡିବି ଗାଁରୁ ସବୁ ବୋରଝାଞ୍ଜି ଦଳଙ୍କୁ ମୁଁ ବାହାର କରି ଗାଁକୁ ସୁନ୍ଦର, ପରିଚ୍ଛନ୍ନ ଆଉ ସ୍ୱାସ୍ଥ୍ୟକର କରି ଗଢିବି। (ସେମାନଙ୍କର ପ୍ରସ୍ଥାନ)

ଯୁବକ-୧ - ବାବାଜୀ ସେ ପୋତାଧନ କଥା..

ବାବାଜୀ - ତୁମ ଗାଁର ତିନିଟା ସର୍ବସାଧାରଣ ପୋଖରୀରେ ସେ ପୋତାଧନର ମାଠିଆ ପୋତା ହୋଇଛି ସେସବୁକୁ ଖୋଜି ଓଝାଳି, ପରିଷ୍କାର କରି ସେଥିରେ ମଧୁର ମାଛ ଚାଷ କର, ପଦ୍ମ ପୋଖରୀଙ୍କର ପଦ୍ମଫୁଲ ଚାଷ

କର, ମହୁମାଛିର ବାକ୍ସ ସବୁ ରଖି ମଧୁ ଚାଷକର, ପୋଖରୀ ହୁଡାରେ କଦଳୀ, ଅମୃତଭଣ୍ଡା, ସଜନା ଆଦିପରିବା ଚାଷକର ଦେଖିବ ସୁନା ଆପେ ବାହାରିବ।

ଯୁବକ-୨ - ଆମ ପାଖରେ ପଇସା କାହିଁ ?

ବାବାଜୀ - ପଇସା ପର କଥା । ଆଗ ଏକ ହୁଅ। ଏଇ ହାତରେ ଗୋଡରେ ଆମର ସବୁ ଅଛି । ଆମେ ସମସ୍ତେ ମିଶି ପୋଖରୀ ଖୋଳିବା, ବାଉଁଶ ନଡା ଦେଇ ସ୍କୁଲ ଘର ତିଆରି କରିବା। ପୋଖରୀହୁଡା କୂଳ ସଫା କରିବା, ଗାଁ ରାସ୍ତା ପରିଷ୍କାର କରିବା ପ୍ରତି ଘରେ ପାଇଖାନା ହେବା ପର୍ଯ୍ୟନ୍ତ ବରପାଲୀର ଉଠା ପାଇଖାନା ତିଆରି କରିବା । କେହି ଆଉ ନଇକୂଳ କିମ୍ବା ପୋଖରୀ ହୁଡାକୁ ପାଇଖାନା କରିବାକୁ ଯିବେ ନାହିଁ । ଗଲେ ୨୦୦ ଟଙ୍କା ଜୋରିମାନା ଦେବାକୁ ପଡିବ। ଆଉ ଗାଁ ଚାରିପାଖେ ଯେତେ ସରକାରୀ ଅନାବାଦୀ ଅଛି ସବୁଠି ଆମ୍ବ, ପଣସ, ନଡିଆ ଗଛ ଲଗେଇବା । ପୋଖରୀରେ ମାଛ ଚାଷ କରିବା। କିଛି ବର୍ଷ ପରେ ଦେଖିବ ଏ ଗାଁ ଆମ ପାଖ ଅଞ୍ଚଳ ଶ୍ରେଷ୍ଠ ଗାଁରେ ପରିଣତ ହେବ। ଆରେ ନିଜ କର୍ମ ଉପରେ ଭରସା ରଖ । ତା'ପରେ ସରକାରଙ୍କ ସାହାଯ୍ୟ ମିଳିବ । ଆଉ ନିଜେ କିଛି ନକରି କେବଳ ବାବାନାଭୂତ ଭଳି ବସି ମଦ, ପିଇ ମାତାଲ ହେବ, ତାସ, ପଶାଖେଳି ସମୟ ବରବାଦ କରିବ। ଆଉ ସରକାରଙ୍କୁ ଅନେଇ ବସି ଥିବ। ଜୀବନ ସାରା ଏମିତି କୁଢିଆ ହୋଇ ଅକର୍ମଣ୍ୟ ହୋଇ ସଢିସଢି ମରିବ। ନା ନିଜର ଉନ୍ନତି ହେବ ନା ପରିବାରର ପିଲା ଛୁଆଙ୍କର ଉନ୍ନତି ହେବ ନା ଗାଁ ଭୂଇଁର ଉନ୍ନତି ହେବ। ସମସ୍ତେ ଚାଲ ମିଳିମିଶି ଯିବା। ଗାଁ ପୋଖରୀ ସଫା କରିବା । ବୋରଝାଞ୍ଜି ଦଳକୁ ଆଗ ନିପାତ କରିବା। ଅପନା ହାତ ଜଗନ୍ନାଥ । ଗାଁର ଉନ୍ନତି ନିଜେ କରିବା । ବୋରଝାଞ୍ଜି ଦଳକୁ ମୂଳୁମାରିବା।

ହରେକୃଷ୍ଣ ହରେରାମ / ହାତେ କର ନିଜ କାମ।
ମୁଖେ ଗାଅ ହରିନାମ ॥

(ଅନ୍ଧାର)

## ୧ମ ଦୃଶ୍ୟ

**(ପରଦା ଉଠିବା ପୂର୍ବରୁ ଢୋଲକ ଓ ଡଫଲିର ଶବ୍ଦ ଶୁଣାଗଲା ଏବଂ ଅନ୍ଧାର ଭିତରେ ପରଦା ଉଠିଲା । ଧୀରେ ଧୀରେ ଆଲୋକ ଆସିଲା ବେଳକୁ ଦେଖାଗଲା, ବଂଗଲାଦେଶୀ ରିଫ୍ୟୁଜିର ଏକ ପରିବାର "ବାଉଁଶ ରାଣୀ" ଖେଳିବାର ପ୍ରସ୍ତୁତି କରି ଲୋକଙ୍କୁ ଖେଳ ଦେଖିବା ପାଇଁ ଡାକୁଛନ୍ତି ଓ ଗଦର ବିଛାଇ ପଇସା ମାଗୁଛନ୍ତି । ବାପା, ମାଆ, ଢୋଲକ ଓ ଡଫଲି ବଜାଉଥିଲା ବେଳେ ଛୋଟ ଝିଅ "କାଲି" ବାଉଁଶ ଖଣ୍ଡେ ହାତରେଧରିବାଉଁଶ ରାଣୀର ଖେଳ ଦେଖାଉ ଅଛି ।)**

ମଙ୍ଗଲୁ - (ଢୋଲ ବଜାଇ) (ଖଣ୍ଡି ଓଡ଼ିଆରେ କହୁଛି)

ଆସରେ ବୁଆ ଆସ, ଖେଳ ଦେଖି ବ ଆସ ।
ବାଉଶଁ ରାଣୀର ଖେଲ, ଜୀବନ ମରଣ ଖେଲ ।
ପେଟ ପାଇଁ ଏଠି କରୁଛୁ ନାଚ ବଞ୍ଚିବା ପାଇଁକି ଦି' ମୁଠା ଭାତ ।
ସେଥି ପାଇଁ ଦେଖ କୁନିଝିଅଟି ଖେଲୁଛି ଜୀବନ ପାଣି ଛଡ଼ାଇ / ବାଜି ଲଗାଇ
ଦି'ଟଙ୍କା ଦିଅ କି ଦି'ମୁଠା ଦିଅ ଯାହା ତୁମର ଖୁସି
ଠାକୁରେ ତୁମକୁ ଆହୁରି ଦେବେ ଖୁସିରେ ହସି ହସି ।

ଗୋଲାବ - ଟଙ୍କାଏ, ଦିଟଙ୍କା, ଦିଅ ବାବୁ । ୫ପ୍ରାଣୀ କୁଟୁମ୍ବର ଜୀବନ ବଂଚିବ, ଠାକୁର ତୁମରି ମଙ୍ଗଳ କରିବେ । ତୁମ ପିଲାଛୁଆ ଖୁସିରେ ରହିବେ । ହସିବେ ଖେଳିବେ, କେତେ କୁଆଡେ ପଇସା ଖର୍ଚ୍ଚ କରି ଦେଉଛ,ଏଇଠି କିଛି ଦେଇଦେଲେ ସରିଯିବନି । ଆପଣଙ୍କ ପୁଣ୍ୟ ହେବ, ଭଣ୍ଡାର ବଢ଼ିବ । କାଳିଆ ଠାକୁର ଆପଣଙ୍କର ମଙ୍ଗଳ କରିବେ । ଦାନ କରନ୍ତୁ, ପୁଣ୍ୟ କରନ୍ତୁ । ସାହାଯ୍ୟ କରି ଧର୍ମ କରନ୍ତୁ ।

ମଙ୍ଗଲୁ - ନାଚରେ କାଲି ନାଚରେ, ମନ ଲଗେଇ ନାଚରେ
ଜୀବନ କୁ ଦେଏ, ପାଣି ଛଡ଼େଇ ବାବୁମାନେ ହେବେ ଖୁସି,
ହାତ ମୁଠା ଖୋଲି ଦାନ କରିବେ ଖାଇବା ଦିଖଣ୍ଡ ରୁଟି ।
ନାଚରେ କାଲି ନାଚରେ ବାଉଁଶ ରାଣୀ ନାଚରେ ।
(ମଙ୍ଗଲୁ ବାଜା ବଜାଇଲା ।)

କାଲି - (ବାଉଁଶରୁ ଓହ୍ଲେଇ ଥାଳି ଧରି ନାଚିନାଚି ମାଗିଲା ) ଦିଅହେ - ବାବୁ ମାନେ ଦିଅହେ ... ଖାଇବାକୁ ମୁଠେ ଦାନା ଦିଅହେ, ବଞ୍ଚିରହିଥିଲେ ଖେଳ ଦେଖାଇବି ମନ ଖୁସି କରୁଥିବି ହେ...
(ଦେଖାଗଲା ଲୋକମାନେ ପଇସା ଫିଙ୍ଗୁଛନ୍ତି, ମାଆ ଗୋଲାବ ପଇସା ଗୋଟେଇଲା)

ମଙ୍ଗଲୁ - କେତେ ପଇସା ହୋଇଛି ମୋତେ ଦେଇଦେ ।

ଗୋଲାବ - ସବୁ ପଇସା କ'ଣ ଖାଇଦେବା ? କିଛି ସଞ୍ଚିଦେଇଥିବା ।

ମଙ୍ଗଲୁ - ପଇସା ସଞ୍ଚି କି କରିବୁ ? କୋଠା ତୋଳିବୁ ?

ଗୋଲାବ - ସବୁ ବେଳେ କ'ଣ ଭଲ ରୋଜଗାର ହେବବୋଲି କଥା ଅଛି, ବେଳ ଅବେଳରେ କାମରେ ଆସିବ। ତା'ଛଡା ଦେହ ପା ବି ତ ଅଛି,ନା ନାହିଁ? (ଲୁଚେଇ ଅଣ୍ଟିରେ ଗୁଞ୍ଜିଲା)

ମଙ୍ଗଲୁ - ଆମର ଦେହ ପା ହବନି। ଯଦିବା ହେଲା। ସରକାରୀ ଡାକ୍ତରଖାନା ଅଛି କି ନାହିଁ? ଦେ ଦେ, ମୋତେ ସବୁ ଦେଇଦେ। ଲୁଚେଇ ଲୁଚେଇ ଅଣ୍ଟିରେ ଗୁଞ୍ଜି ଦେଉଛୁ କ'ଣ ?

ଗୋଲାବ - କେଉଁଠି ଖାଲି ଗୁଞ୍ଜି ଦେଉଛି ଯେ ତୋ ଆଖିରେ ଦିଶି ଯାଉଛି ?

ମଙ୍ଗଲୁ - ସେଇଟା କ'ଣ ?

ଗୋଲାବ - ଦଶଟଙ୍କା ତ...

ମଙ୍ଗଲୁ - ସେଇଟା ଦେଇ ଦେ। ମୋର ହାତକୁ ବଢ଼ା..

ଗୋଲାବ - ଯାହା ରୋଜଗାର ହେଉଛି ସବୁତ ନେଇ ଯାଉଚୁ। ସବୁତ ପିଇ ଦଉଚୁ। ଏଇ ଦଶଟା ଟଙ୍କା ମୁଁ ରଖିଥାଏ, (ଗେହ୍ଲେଇ) ସଞ୍ଜ ବେଳକୁ ମସଲା ମୁଢ଼ି କିଣିଲେ ଖାଇବା।

ମଙ୍ଗଲୁ - ମୋତେ ଦେ, ମୁଁ ସବୁ ନେଇ ଆସିବି, ଡାଲି, ଚାଉଳ ପନିପରିବା ମସଲା ମୁଢ଼ି ସବୁ ନେଇଆସିବି।

ଗୋଲାବ୍ - ଚୁଲି ପାଉଁଶ ଆଣିବୁ? ସବୁ ନେଇକି ଆସିବୁ ନା ସବୁ ପିଇକି ଆସିବୁ? ମୁଁ ତୋତେ ଜାଣିନି ?

ମଙ୍ଗଲୁ - ପିଇଲି ବେଶ୍ କଲି ତୋର କ'ଣ ଯାଉଛି, ମୁଁ ତୋ ବୋପା ପଇସାରେ ପିଉଛି? ହକ୍ ରୋଜଗାର କରି ପିଉଛି।

ଗୋଲାବ - ଏକଥା କହିବାକୁ ନିଜକୁ ଟିକିଏ ଲାଜ କି ସରମ ଲାଗୁନି। ଝିଅଟା ନାଚି ଡେଇଁ ଜୀବନକୁ ପାଣି ଛଡ଼େଇ ବାଉଁଶ ରାଣୀ ଖେଳୁଛି। ଆଉ ତା'ରି ପଇସାରେ ତୁ ମଦ, ଗଞ୍ଜେଇ ଖାଇ ମାତାଲ ହୋଇ ବୁଲୁଛ। ଧିକ୍ ତୋତେ ଆଉ ଧିକ୍ ତୋର ବାପ ପଣିଆକୁ। (କାଳି ଆସିଲା)

କାଳି - ବାପା, ବାପା.. ଆଜି ମୋ ପାଇଁ ଅଣ୍ଡା ଆଣିବ। ୨ଟା ଅଣ୍ଡା .. ମାଆ ଆଜି ଅଣ୍ଡା ଦରକାରୀ କରିବୁ। ମୁଁ ଖେଳିବାକୁ ଯାଉଛି, ଆସିଲେ ଖାଇବି।

ଗୋଲାବ - ମୋତେ କ'ଣ କହୁଛୁ, ତୋ ବାପାକୁ କହ, ସେ ଅଣ୍ଡା ଆଣିଲେ ମୁଁ ତରକାରି କରିଦେବି।

ମଙ୍ଗଲୁ - ହଁ ହଁ ତୁ ଖେଳିବୁ ଯାଆ , ମୁଁ ତୋ ପାଇଁ ୨ଟା ଅଣ୍ଡା ଭୂଜିଆ କରି ନେଇ ଆସିବି ତୁ ଖାଇବୁ । ଯାଆ (ସ୍ତ୍ରୀ ପାଖରୁ ଟଙ୍କା ଛଡାଇ ନେଲା ଓଃ ଗୀତ ଗାଇଲା)। (ସାଧେର ଲାଓ) (ନାଚି ନାଚି ପ୍ରସ୍ଥାନ) (ଝିଅ ନାଚି ନାଚି ମଞ୍ଚର ଆଉ ଏକ ପ୍ରାନ୍ତ କୁ ଚାଲି ଗଲା, ଓ ଚକ୍ରର କାଟିବା ଭିତରେ ମଞ୍ଚର ଦୃଶ୍ୟ ପରିବର୍ତ୍ତିତ ହୋଇ ଅନ୍ୟ ଏକ ସ୍ଥାନର ଦୃଶ୍ୟ ଦେଖାଗଲା। କାଳି ଠିଆ ହୋଇ ଶୁଣିବାକୁ ଲାଗିଲା ନେପଥ୍ୟରୁ ୟୁ.ପି ସ୍କୁଲର ବର୍ଣ୍ଣବୋଧ ପଢ଼ା ସହ ପିଲାଙ୍କ ଗୀତ ଶୁଣାଗଲା। କାଳି ମନ ଦେଇ ଶୁଣିଲା ନେପଥ୍ୟରୁ )

ଗୁରୁମା - ଚକ- ଅଖ-କଟକନଗର। ଧବଳ ଟଗର । କନକର ଘର । (ପିଲା ମାନେ - ସେଇ କଥାସବୁ ଗାଇଲେ ଓ କାଳି ମଧ ତାକୁ ଗାଇଲା)

କାଳି - କନକର ଘର... ମୋ ...ଘର.. କାଳିର ଘର... ଜରି ଘର...। (ପିଲାମାନେ ନେପଥ୍ୟରୁ) ବାଇଚଢ଼େଇରେ ବାଇଚଢ଼େଇ, ତୋ ମାଆ ଯାଇଛି ଗାଈ ଚରେଇ।

କାଳି - ବାଇଚଢ଼େଇ ରେ ବାଇଚଢ଼େଇ, ତୋ ମାଆ ଯାଇଛି ଗାଈ ଚରେଇ। (ଛୁଟୀ ଘଣ୍ଟା ବାଜିଲା। ପିଲାଙ୍କର କୋଳାହଳ ଭିତରେ ସ୍କୁଲର ଛୁଟୀ ହେଲା)

ଗୁରୁମା - (ପ୍ରବେଶୀ) (ଚାଲିଯାଉଥିଲେ)

କାଳି - ଆପଣ କିଏ? ଏଠି କ'ଣ ହେଉଥିଲା? ଗୀତ ସବୁ କିଏ ଗାଉଥିଲା.. ?

ଗୁରୁମା - ଏଇଟା ସ୍କୁଲ। ଏଠି ପିଲାମାନେ ନାଚ ଗୀତ ଗାଇ ପାଠ ପଢ଼ନ୍ତି, ମୁଁ ସେମାନଙ୍କୁ ପାଠ ପଢ଼ାଏ, ମୋତେ ସମସ୍ତେ ଗୁରୁମା ବୋଲି ଡାକନ୍ତି। ତୁମେ କିଏ, ତୁମ ନାଁ କ'ଣ? ଏଠି କ'ଣ କରୁଛ?

କାଲି - ମୋ ନାଁ "କାଲି" ସେଇ ଟ୍ରେନ ଲାଇନ୍ ଆରପାଖ ଜରିବସ୍ତିରେ ମୁଁ ରହେ, ସେଇଟି ଆମର ଗୋଟିଏ ଜରି ଘର ଅଛି, ମୁଁ ବାଉଁଶରାଣୀ ଖେଳି ପଇସା ମାଗେ।

ଗୁରୁମା - ଏଠି କ'ଣ କରୁଛ?

କାଲି - ଖେଳିବାକୁ ଆସିଥିଲି। ଗୀତ ଶୁଣି ରହିଗଲି। ଆଚ୍ଛା ଗୁରୁମା। ଏବେ ଯେଉଁ ଗୀତ ବୋଲା ହେଉଥିଲା ସେ ଗୀତ ତୁମେ ଜାଣିଛ?

ଗୁରୁମା - କଟକ ନଗର ..ଧବଳ ଟଗର..

କାଲି - ନାନା .. ବାଇ ଚଢ଼େଇରେ ବାଇଚଢ଼େଇ ..

ଗୁରୁମା - ହଁ ଜାଣିଛି - କାହିଁକି କ'ଣ ହେଲା...

କାଲି - ଗୀତଟା ଭାରି ବଢ଼ିଆ ଲାଗୁଛି, ହେଲେ ତା'ପରର ଧାଡ଼ିଟା କ'ଣ ଟିକିଏ କହିବ କି? କହୁନ ମୁଁ ଶିଖିବି ପୁଣି ନାଚିନାଚି ଗାଇବି।

ଗୁରୁମା - ମୁଁ କହିଲେ କ'ଣ ତମେ ମନେରଖି ପାରିବ?

କାଲି - ହଁ ହଁ ମନେରଖିବି । ବାଉଁଶ ରାଣୀ ଖେଳିଲାବେଳେ ଗାଇବି - ମୋତେ ଶିଖେଇ ଦେବନା..

ଗୁରୁମା - ହଁ ଶିଖେଇ ଦେବି... ଶୁଣ.. ବାଇଚଢ଼େଇରେ ବାଇଚଢ଼େଇ ..ତୋ ମାଆ ଯାଇଛି ଗାଈ ଚରେଇ ।

କାଲି - (ଗୀତ ଗାଇ ଘିରି ଘିରି ହୋଇ ବୁଲିଲା) ବାଇଛଡେଇରେ, ବାଇଚଡେଇ, ତୋ'ମାଆ ଯାଇଛି ଗାଈ ଚରେଇ।

ଗୁରୁମା - ଗହୀର ବିଲରୁ ଆଣିବ ବେଲ । କୋଳରେ ବସେଇ କରିବ ଗେଲ।

କାଲି - (ସେଇ ଗୀତ ଗାଇଲା)।

ଗୁରୁମା - ଆଜି ଏତିକି ଥାଉ। କାଲି କି ଆସ ତା' ପରଧାଡ଼ି ଶିଖିବ। ଆଉ ତା' ସାଙ୍ଗରେ ଆହୁରି ଅନେକ ଗୀତ ଶିଖେଇ ଦେବି, ଗାଇବ। ଆଚ୍ଛା ଶୁଣ ତୁମେ ନିଇତି ଦ୍ୱିପ୍ରହରକୁ ସ୍କୁଲକୁ ଚାଲିଆସିବ, ବୁଝିଲ । ଏଠି ମଧ୍ୟାହ୍ନ ଭୋଜନ ଖାଇବ, ଗୀତ ଶିଖିବ, ଗପ ଶୁଣିବ। ଆସିବ ନା ?

କାଲି - ମଧ୍ୟାହ୍ନଭୋଜନ କ'ଣ? ସେଥିରେ କ'ଣ ଖାଇବି।

ଗୁରୁମା - ମଧ୍ୟାହ୍ନଭୋଜନ ମାନେ ଖରାବେଳ ଖାଇବା .. ସେଥିରେ ଭାତ, ଡାଲି, ଅଣ୍ଡା ତରକାରି ଖାଇବାକୁ ମିଳେ, ଆସିବ ନା ?

କାଲି - ଅଣ୍ଡା ତରକାରି ମିଳିବ ? ତା'ହେଲେ ମୁଁ ନିଶ୍ଚୟ ଆସିବି। ହେଲେ ଗୁରୁମା ! ମୁଁ ତ ଏଠି ପାଠ ପଢୁନାହିଁ, ମୁଁ ଆସିଲେ କ'ଣ ମୋତେ ଭିତରକୁ ଛାଡ଼ିବେ। ଖାଇବାକୁ ଦେବେ?

ଗୁରୁମା - ହଁ ଛାଡ଼ିବେ । ମୁଁ ତୁମକୁ ଭିତରକୁ ନେଇଯିବି। (ବ୍ୟାଗରୁ ଖଣ୍ଡେ ବହି ବାହାର କରି) ଏଇଟା ନିଅ ଦେଖିବ।

କାଲି - ଏଇଟା ନେଇ ମୁଁ କ'ଣ କରିବି। ମୁଁ ପରା ପାଠ ପଢ଼ିନାହିଁ।

ଗୁରୁମା - ଏଇଟା ଛବି ବହି। ଏଥିରେ ପାଠ ସାଙ୍ଗକୁ ବହୁତ ସୁନ୍ଦର ସୁନ୍ଦର ଛବି ଅଛି। ତାକୁ ଦେଖିବ। ପରେ ପାଠ ପଢ଼ିଲେ ସବୁ ବୁଝି ପାରିବ।

କାଲି - ଏଇଟା ରଖିବି କେଉଁଠି? ଆମର ତ ଜରିଘର।

ଗୁରୁମା - ଏଇଟା ମୁଣ୍ଡ ତଳେ ରଖି ଶୋଇପଡ଼ିବ କାଲି ଖରାବେଳେ ଆସିଲେ ମୁଁ ତମକୁ ଗୋଟିଏ ସ୍କୁଲ ବ୍ୟାଗ ଦେବି, ଖାତା ପେନସିଲ ଦେବି ସ୍କୁଲ ଜାମାଦେବି। ସବୁ ସେଇ ବ୍ୟାଗରେ ରଖିବ।

କାଳି - ସେ ଗୁଡ଼ା କ'ଣ କରିବି ?

ଗୁରୁମା - ଜାମା ପିନ୍ଧିବ, ବହିନେଇ ପଢ଼ିବ, ଖାତା, ପେନସିଲରେ ଅ- ଆ - କଖ, ଲେଖିବ। ପାଠ ପଢ଼ିବ।

କାଳି - ବାପା - ମାରିବ।

ଗୁରୁମା - କାହିଁକି ମାରିବ ?

କାଳି - ମୁଁ ପାଠ ପଢ଼ିଲେ ବାଉଁଶ ରାଣୀ ହେବ କିଏ ? ପଇସା ରୋଜଗାର କରିବ କିଏ। ଆମେ ଖାଇବା କ'ଣ ?

ଗୁରୁମା - ଦିନରେ ନହେଲା ନାହିଁ। ରାତିରେ ପଢ଼ିବ। କେତେନୂଆ ନୂଆ ଗୀତ ଶିଖିବ,ଗପ ଶୁଣିବ, କାହାଣୀ ଶୁଣିବ, ନୂଆ ନୂଆ କଥା ଜାଣିବ। ନିଇତି ଖରାବେଳେ ଭାତ ତରକାରି ଖାଇବ, ସ୍କୁଲ ପୋଷାକ ପିନ୍ଧିବ, ତୁମରି ଭଳି କେତେ କୁନି କୁନି ପିଲାଙ୍କ ସାଙ୍ଗରେ ଲୁଚିକାଳି ଖେଳିବ। ଆସିବନା ?

କାଳି - ମୋତେ ପାଠ ପଢ଼ିବାକୁ ପଇସା ଦେବ କିଏ ? ମୋ ବାପା ମାଆ ପାଖରେ ତ ପଇସା ନାହିଁ।

ଗୁରୁମା - ମାଗଣାରେ ପାଠ ପଢ଼ିବା କୁ ମିଳିବ। ସମସ୍ତଙ୍କୁ ମିଳୁଛି ତୁମକୁ ବି ମିଳିବ। ସରକାର ଦେଉଛନ୍ତି। ବାକି କଥା ମୁଁ ବୁଝିବି। ତୁମେ ଖାଲି ନିଇତି ତମ ଖେଳ ସରିବା ପରେ ଏଇଠିକି ଚାଲିଆସିବ। ହେଲା ତ ?

କାଳି - ଠିକ୍ ଅଛି, ନିଶ୍ଚୟ ଆସିବି କିନ୍ତୁ ବାଉଁଶରାଣୀ ଖେଳ ସରିବା ପରେ।

ଗୁରୁମା - ଠିକ୍ ଅଛି ସୁନା ଝିଅ...(ହସି ହସି ଚାଲିଗଲେ ଗୁରୁମା)

କାଳି - (ଗୀତଗାଇ ନାଚିଲା) "ବାଇ ଚଢ଼େଇରେ ବାଇଚଢ଼େଇ ତୋ ମାଆ ଯାଇଚି ଗାଇ ଚରେଇ। ଗହିରି ବିଲରୁ ଆଣିବ ବେଙ୍ଗ, କୋଳରେ ବସେଇ କରିବ ଗେଲ"। (କାଳି ନାଚି ନାଚି ଘରକୁ ଫେରିଛି, ଦେଖିଛି ମାଆ ଚୁଲି ପାଖରେ ବସି ଭାତ ରାନ୍ଧୁଛି, ବାପା ଆସିନି) ମାଆ, ଅଣ୍ଡା ତରକାରି କରିଛୁ ?

ଗୋଲାବ - ତୋ ବାପା ପରା ଆସିନି। ଭାତ ରନ୍ଧାତ ସରିଲାଣି ତୋ ବାପା ଅଣ୍ଡା ଆଣିଲେ ସିନା ଭୁଜିଆ କରିଦେବି। ଏତେ ବେଳଯାଏ ତୁ କୁଆଡ଼େ ଯାଇଥିଲୁ ?

କାଳି - (କହି ଆସୁଥିଲା ଯେ ସ୍କୁଲ ଆଡ଼କୁ ଯାଇଥିଲା ବୋଲି କିନ୍ତୁ ମାଆ କାଳେ ରାଗିବ ତେଣୁ କହିଲାନାହିଁ) ସେଇ ବରଗଛ ଆଡ଼କୁ ଖେଳିବାକୁ ଯାଇଥିଲି। ଭୋକଲାଗିଲା ବୋଲି ଚାଲିଆସିଲି। କ'ଣ ଖାଇବାକୁ ଦେ-।

ଗୋଲାବ - ଖାଲି ଭାତ ରାନ୍ଧି ଦେଇଛି। ତୋ ବାପା ଅଣ୍ଡା ଆଣିଲେ ମୁଁ ତରକାରି କରିଦିଅନ୍ତି। ଆଚ୍ଛା ଆଳୁ ଦିଟା ଚୁଲିରେ ପକେଇ ପୋଡ଼ିଦେଉଛି ତାକୁ ଲଗେଇ ଗରମ, ଗରମ ଭାତ ଖାଇ ଦିଅନ୍ତୁ।

କାଳି - ନା ନା ମୁଁ ଅଣ୍ଡା ତରକାରି ଭାତ ଖାଇବି। ନହେଲେ ଖାଇବି ନାହିଁ ଯାଆ-।

ଗୋଲାବ - ତୁ ତ ଏତେ ସମୟ ଧରି ଖେଳିବାକୁ ପଳେଇଲୁ। ଏଇଠି ଥିଲେ ଦିଜଣ ସାଙ୍ଗ ହୋଇ ସେଇ ରେଳଲାଇନ ପୋଲ ତଳ ନାଳରୁ କଳମ ଶାଗ କି ମଦରଙ୍ଗା ଶାଗ ମୁଠାଏ ତୋଳି ଆଣିଥିଲେ ତ ଆମେ ମାଆଝିଅ ଗରମ ଭାତରେ ପାଣି ଢ଼ାଳିଦେଇ ଆରାମରେ ପେଟେ ପେଟେ ଶାଗ ପଖାଳ ଖାଇ ଶୋଇ ପଡ଼ି ଥାନ୍ତୁ। ତୋ ବାପା ଯେତେବେଳେ ଆସୁଛି ଆସୁ।

କାଳି - ବାପା ଏତେ ବେଳ ଯାଏ ଆସିନି କାହିଁକି ?

ଗୋଲାବ - ସେ କଥା କ'ଣ ତୁ ଜାଣିନୁ ? ତା' ଅଣ୍ଟିରେ ପଇସା ପଶିଲେ ସେ ତ ଆଉ ନିଜକୁ ମଣିଷ ବୋଲି ଭାବେନି ? ଭାବେ ରାଜା କି ମହାରାଜା। ଆଜି ଭଲ ଦି'ପଇସା ହୋଇଥିଲା। ଭାବିଥିଲି ଡାଲି, ସଉଦା ପାଇଁ କିଛି ପଇସା ଗଣ୍ଠିଲିରେ ସାଇତି ରଖିବି। ହେଲେ ମୋ କଥା ସେ କ'ଣ ଶୁଣିଲା ? ପଇସା ଦେଖିଲେ ତ ତା' ପାଟିରୁ ଲାଳ ବୋହିଲା, କେମିତି ୨/୪ ବୋତଲ ଗଉଳି କି ମହୁଲୀ ପିଇଦଇ ସାରିଲେ ଶାନ୍ତି। ଆଜି ରାତିରେ ବି' ସେ ବସ୍ତିକୁ ଫେରୁଛି କି ନାହିଁ କିଏ ଜାଣେ ?

କାଳି - ତୁ ତାକୁ ମଦ ପିଇବାକୁ ମନା କରୁନୁ।

ଗୋଲାବ - ତୁ କ'ଣ ଦେଖୁନ। ନିତି ମନା କରୁଛି। ମାଡ଼ ଗାଳି ଖାଉଛି। ଫଟାକପାଳ କୁ ଦୋଷ ଦେଇ ରହୁଛି।

କାଳି - ଆଜି ସେ ଆସୁ ମୁଁ ତାକୁ ମନାକରିବି।

ଗୋଲାବ - ନାଇଁ ନାଇଁ ତୁ ତାକୁ କିଛି କହିବୁ ନାହିଁ। ସେ ତୋତେ ବି' ବାଡ଼େଇ ପକେଇବ।

କାଳି - ନାନା- ମୋ ବାପା କେବେ ମୋତେ ମାରିବ ନାହିଁ

ଗୋଲାବ - ତୁ ଜାଣିନୁ ଲୋ ଝିଅ। ଘରୁ ଗଲା ବେଳେ ଯିଏ ତୋର ବାପାଥିଲା, ମାଲ ପିଇ ଘରକୁ ଫେରିଲା ବେଳକୁ ସିଏ ଆଉ ତୋ ବାପା ହୋଇ ନଥିବ। ପଶୁ ପାଲଟି ଯାଇଥିବ। ତା' ଆଗରେ ଝିଅ ମାଇପ ସବୁ ସମାନ- ଖବର ଦାର ତା' ଆଗକୁ ତୁ ଯିବୁନି। (ଦୂରରୁ ଗୀତ ଗାଇ ମଙ୍ଗଲୁ ର ପ୍ରବେଶ) (ହାତରେ ମଦ ବୋତଲ ଓ ପୁଡ଼ିଆ ଖଣ୍ଡେ ଧରିଛି)

ମଙ୍ଗଲୁ - ପଖାଳ ଭାତରେ ପେଟଭରେ ସିନା ମନ ଜମା ଭରେ ନାହିଁ। ଉଉଳି, ମହୁଲୀ ଢ଼ୋକେ ପିଇଦେଲେ ମନ ଝୁମେ ଝାଇଁ ଝାଇଁ..

ଗୋଲାବ୍ - ସବୁ ପଇସା ତ ଅଣ୍ଟିରେ ଗୁଞ୍ଜି ପଳେଇଗଲୁ । ଏବେ ଖାଇବୁ କ'ଣ?

ମଙ୍ଗଲୁ - ମୋର ଖାଇବା ଦରକାର ନାହିଁ।

ଗୋଲାବ - ଆଉ ଆମେ ଖାଇବୁ କ'ଣ?

ମଙ୍ଗଲୁ - (ହାତରେ ଧରିଥିବା ପୁଡ଼ିଆଟା ବଢ଼େଇଦେଲା) ଏଇନେ ନିଜେ ଖାଆ ଆଉ ଝିଅ କୁ ଦେଏ।

ଗୋଲାବ - (ପୁଡ଼ିଆ ଭିତରଟା ଦେଖି) ଝିଅ କହିଥିଲା ଅଣ୍ଡା ଆଣିବାକୁ, ଅଣ୍ଡା କାହିଁ?

ମଙ୍ଗଲୁ - ତୋତେ ଦେଲି ପରା। ସେଇଥିରେ ଅଛି ଡବଲ ଅଣ୍ଡା ଭୁଜିଆ।

ଗୋଲାବ - ଚୁଲି ପାଉଁଶ ଅଛି। ଏଇଟା ତ ପୂରା ଖାଲି। (ଝିଅ କାନ୍ଦିଲା) ଦେଖିଲୁ ତ ମୁଁ କ'ଣ କହୁଥିଲି? ଘରୁ ଯିଏ ଯାଇଥିଲା ସିଏ ତୋର ବାପା ଥିଲା, ନିଶାଖାଇ ଯିଏ ଫେରିଛି ସେଇଟା ତୋ ବାପା ନୁହେଁ ରାକ୍ଷସ। ଉଳ ମୁଁ ଆଳୁ ପୋଡ଼ି ଚକଟି ଦେଉଛି। ତାକୁ ତୁ ଅଣ୍ଡା ଚକଟା ଭାବି ଦି ମୁଠା ଭାତ ଖାଇ ଦେବୁ।

କାଳି - ନା ମୁଁ ଖାଇବି ନାହିଁ।

ଗୋଲାବ - ଆରେ ତା' ଉପରେ ରାଗି କିଛି ଲାଭ ନାହିଁ। ତୋର ନିଜ ଦେହକୁ କଷ୍ଟ ହେବ ସିନା, ତାର କିଛି ହେବ ନାହିଁ ଲୋ ଝିଅ। ଏଇନେ ତାକୁ କହିଲୁ ଯାହା ପଥରକୁ କହିଲୁ ସେଇଆ।

କାଳି - ବାପା! ତୁ ମୋ ପାଇଁ ଅଣ୍ଡା ଆଣିବୁ ବୋଲି କହିଥିଲୁ ନା? ଆଣିଲୁ ନାହିଁ କାହିଁକି?

ମଙ୍ଗଲୁ - ମୁଁ ଆଣିଥିଲି...ମୋ ରାଣ, ତୋ ମାଆ ରାଣ ଖାଇ କହୁଛି ମୁଁ ଉରିଟା ଅଣ୍ଡାର ଭୂଜିଆ କରି ଏଇ ପୁଡ଼ିଆରେ ଆଣିଥିଲି।

କାଳି - ତୁ ମିଛ କହୁଛୁ। ଦେଖୁନୁ ପୁଡ଼ିଆ ପରା ଖାଲି।

ଗୋଲାବ - କହୁନୁ, ମୁଁ ଖାଇ ଦେଲି ବୋଲି।

ମଙ୍ଗଲୁ - ନା ନା ତୁ ଖାଇଲୁ କେତେବେଳେ ? ଦେଖି (ପୁଡ଼ିଆକୁ ଦେଖି) ସତରେ ତ ନାହିଁ। (ମନେପକେଇ) ବୁଝିଲୁ ଝିଅ, ମୋ ରାଣ, ମୁଁ ଉରିଟା ଅଣ୍ଡା ଭୁଜିଆ କରିଆଣିଥିଲି।

କାଳି - ତା'ହେଲେ ଗଲା କୁଆଡେ? ତୁ ମୋତେ ମିଛ କହୁଛୁ। ମୋର ମୁଣ୍ଡରେ ହାତ ଦେଇ ସତ କହିଲୁ। (ତା' ହାତକୁ ନେଇ ନିଜ ମୁଣ୍ଡରେ ରଖିଲା)

ମଙ୍ଗଲୁ - ସତ କହୁଛି ଆଣିଥିଲି। ଭୁଜିଆ ପୁଡ଼ିଆଟା ଧରି ଘଷଣା କରୁ କରୁ ବୋଧହୁଏ ସବୁ ସରିଯାଇଛି। ମୁଁ ଜାଣିପାରି ନାହିଁ। ହଉ ଠିକ୍ ଅଛି, ତୁ ଆଜି ଆଳୁ ପୋଡ଼ା ଦେଇ ଖାଇଦେଇଥା। ମୁଁ କାଲିକି ନିଶ୍ଚୟ ଆଣିବି।

ଗୋଲାବ - ଆଉ ମୁଁ କ'ଣ ଖାଇବି।

ମଙ୍ଗଲୁ - ଯାହା ଖାଇବୁ ଖାଆ। ମୁଁ କିନ୍ତୁ କିଛି ଖାଇବି ନାହିଁ, ଶୋଇବି ।

ଗୋଲାବ - ତୁ କାହିଁକି ଖାଇବୁ? ତୁ ତ ମାଲ ପିଇ ଦେଇଛୁ ନା। ସେ ଗୁଡ଼ା ପିଇଲେ ତୋତେ ଆଉ ଭୋକ କୁଆଡ଼ୁ ଲାଗିବ?

କାଲି - (ବାପା ହାତରୁ ବୋତଲ ଛଡ଼େଇ ନେଇ ନିଜେ ପିଇବାକୁ ଯାଉଛି) ତା'ହେଲେ ଆମକୁ ବି ସେଇ ବୋତଲଟା ଦେ ସେଇଥିରୁ ମୁନ୍ଦେ ମୁନ୍ଦେ ପିଇଦେବୁ ଯେ, ଆମକୁ ବି ଭୋକ ଲାଗିବ ନାହିଁ।

ଗୋଲାବ - (ବୋତଲ ଛଡ଼େଇ ନେଇ ତାକୁ ବାଡ଼େଇଛି) ତୁ କ'ଣ କରୁଛୁ? ମଦ ପିଇବୁ? (କାଲି କାନ୍ଦିଛି। ନିଜେ ମଧ ବହୁନି କାନ୍ଦୁଛି) ଏବେ ମୁଁ କ'ଣ କରିବି ଲୋ ମାଆ..। ଯାଙ୍କର ଏଇ ନିଶା ଗୁଣରୁ ଆମର ପିଲା ଗୁଡ଼ା କେମିତି ବିଗିଡ଼ି ଯାଉଛନ୍ତି। ତଥାପି ଯାଙ୍କର ଚିନ୍ତା ନାହିଁ। ନିଜେ ଦି'ପଇସା ରୋଜଗାର କରୁନି। ପିଲାଙ୍କ କଥା ବୁଝୁନି। ପୁଅଦି'ଟାଙ୍କ ହାତରେ ଅଖା ଧରେଇ ଦେଇ କାହାକୁ ବୋତଲ ତ କାହାକୁ ଜରି ଗୋଟେଇ ବାକୁ ସହର କୁ ପଠେଇ ଦେଲା ଯେ, ସେମାନେ ଏବେ ଆଉ ଘରକୁ ଫେରୁନାହାଁନ୍ତି। ନିଶା ଖାଇକି ଜଣେ ପ୍ଲାଟଫର୍ମରେ ଶୋଉଛି ତ କିଏ Overbridge ତଳେ ଶୋଉଚି। ଆଉ ଏଡ଼ିକି ଝିଅକୁ ପୁଣି ବାଉଁଶ ରାଣୀ କରି ନଚେଇ ନଚେଇ ଭିକମଗା କରାଉଛି। ସେଥିରେ ପୁଣି ଯାକୁ ଲାଜ ସରମ ଲାଗୁନି ଯେ ତା'ରି ପଇସାରେ ମଦ ପିଇ ରାଜା ଭଳିଆ କଥା କହୁଛି। ଧିକ ତୋତେ ଆଉ ଧିକ ତୋର ବାପ ପଣିଆକୁ।

କାଲି - ମାଆ- କାହାକୁ ଗାଳି କରୁଛୁ ? ବାପା ପରା ଭୂଇଁରେ ପଡ଼ି ଘୁଙ୍ଗୁଡ଼ି ମାରୁଛି। ସିଏ କ'ଣ ତୋ ଗାଳି ଶୁଣି ପାରୁଛି ନା ତୋ କାନ୍ଦ ତାକୁ ଶୁଭୁଛି? ମିଛଟାରେ କାନ୍ଦି ଆଉ ଲାଭ କ'ଣ କହ।

ଗୋଲାବ - କ'ଣ ଆଉ କରିପାରିବି କହ? ମୋ ଭାଗ୍ୟତ ସେଇଆ, ମୁଣ୍ଡ ବାଡ଼େଇ କାନ୍ଦିବା ଛଡ଼ା ଆଉ ଉପାୟ କ'ଣ?

କାଲି - ତୁ, ମୁଣ୍ଡ ବାଡ଼େଇ କାନ୍ଦ କି ଗୋଡ଼ କଚାଡ଼ି କାନ୍ଦ କିଛି ଲାଭ ହେବନି - ଚାଲ ଶୋଇବୁ ଚାଲ।

ଗୋଲାବ - ମୋ କଥା ମାନ- ଦିମୁଠା ଖାଇଦେ।

କାଲି - ତୁ ଖାଇବୁ ଯଦି ଖାଆ... ମୋତେ ଭୋକ ନାହିଁ। (କାଲି ସେଠାରୁ ଉଠିଆସି ମଞ୍ଚର ଅନ୍ୟଏକ ସ୍ଥାନରେ ଅକାଶ ଆଡ଼କୁ ଚାହିଁ ଗୀତ ଗାଇଲା, ଦୁଃଖରେ)

ବାଇ ଚଢ଼େଇରେ ବାଇଚଢ଼େଇ
ତୋ ମା ଯାଇଛି ଗାଇ ଚରେଇ

**(ଦୃଶ୍ୟାନ୍ତର)**

## ୨ୟ ଦୃଶ୍ୟ

**(ପରଦିନ ସକାଳ । ମଙ୍ଗଲୁ ବାଉଁଶରାଣୀ ଖେଳକୁ ଯିବାକୁ ସଜବାଜ ହେଉଛି)**

ମଙ୍ଗଲୁ - ଜଲଦି ଜଲଦି ସହଳ ବାହାରି ପଡ଼, ଖରାଟାଣ ହେବା ଆଗରୁ ଆମେ ଆମର ଖେଲ ସାରି ଫେରି ଆସିବା । (ଗୋଲାବ ଘରସଜାଡୁଛି, କିନ୍ତୁ କିଛି ଉତ୍ତର ଦେଉନାହିଁ ।) କ'ଣ କହୁଛି ପରା ! ଶୁଣା ଯାଉନି କି ? ଏବେ ଯେଉଁ ଖରା ହେଉଛି ନା..ସେଇଥି ପାଇଁ କହୁଛି, ଝିଅ କାହିଁ ଗଲା ? ତାକୁ ଡାକି ଜଲଦି ବାହାରି ପଡ଼ । ଆଉ ଡେରି କଲେ ଖରାରେ ସିଝିବାକୁ ପଡ଼ିବ ।

ଗୋଲାବ - ହୁଁ (ମାରି ପୁଣି କାମରେ ଲାଗିଲା)

ମଙ୍ଗଲୁ - କ'ଣ ଖାଲି ହୁଁ, ହୁଁ ମାରି ହେଉଛୁ, ମୋ କଥା ତୋତେ ଶୁଣାଯାଉଛି ନା ନାହିଁ ?

ଗୋଲାବ - ମୋତେ କ'ଣ କହୁଛୁ ? ଝିଅ କୁ କହୁନୁ ?

ମଙ୍ଗଲୁ - କିରେ ତୋତେ ପରା କହୁଛି ଝିଅ କୁ ଡାକ ବୋଲି ।

ଗୋଲାବ - କାହିଁକି ତୋତେ ଡାକି ଆସୁନି କି ? ସେ ଆଜି ଯାଇ ପାରିବନି କହୁଛି । ସେ ନ ଯିବ ଯଦି ନଯାଉ । ସେ ନ ଗଲେ କ'ଣ ଚଳିବନି କି ?

ମଙ୍ଗଲୁ - ତୋ ମଥା ଖରାପ ହୋଇ ଗଲାଣି ବୋଧହୁଏ । ସିଏ ନଗଲେ ବାଉଁଶ ରାଣୀ ହେବ କିଏ ? ବାଉଁଶ ଧରି ବାଉଁଶ ଉପରେ କ'ଣ ମୁଁ ଚଢ଼ିବି ?

ଗୋଲାବ - ଚଢୁନୁ । କିଏ ମନା କରୁଛି କି ?

ମଙ୍ଗଲୁ - କିରେ ଖୁବ୍ ବଢ଼ି ବଢ଼ି କଥା କହୁଛୁ, ତୋ ମଥା ଠିକ୍ ଅଛିଟି ?

ଗୋଲାବ - ମୁଣ୍ଡ ଠିକ୍ ରହିବ କେମିତି ? ରୋଜଗାର କଲାବେଳକୁ ଝିଅ ଝିଅ, ଆଉ ଗେଙ୍ଗା ମାଇଲା ବେଳକୁ, ମାଲ ପିଇଲା ବେଳକୁ କାହିଁ ତା'କଥାତ ତୁମର ବିଲକୁଲ ମନେ ପଡୁନି ।

ମଙ୍ଗଲୁ - ହେଇଟି ମୋର ମଥା ଗରମ କରନା କହୁଛି । ନହେଲେ ଆମର ଅସଲ ରୂପଟା ଦେଖିବୁ ଜାଣିଥା ।

ଗୋଲାବ - ଆହା କି ରୂପ ? ଆଉ ମୋତେ କେତେ ନୂଆ ନୂଆ ରୂପ ଦେଖେଇବ ହେ ପ୍ରଭୁ ଜଗନ୍ନାଥ ଙ୍କର ବାରମାସରେ ୩୨ ରୂପ ଠାରୁ ତୁମ ରୂପଯେ ପୂରା ଅଲଗା । ସେ କଥା ଜାଣିବାକୁ କି ମୋର ଆଉ ବାକି ଅଛି । ସକାଳେ ଗୋଟିଏ ରୂପ, ଏଇନେ ଆଉ ଗୋଟିଏ ରୂପ - ଦ୍ୱିପ୍ରହରରେ ଅଣ୍ଟିରେ ପଇସା ପଶିଲେ ଆଉ ଏକ ରୂପ ପୁଣି ରାତିକି ପେଟରେ ମହୁଲୀ, ଗଉଳି ପଶିଲେ ପୁଣି ଭିନ୍ନ ରୂପ । କେତେ ରୂପ ଆଉ ତୁମେ ଦେଖେଇବ ପ୍ରଭୁ... ?

ମଙ୍ଗଲୁ - ଏ ତୋତେ ପରା କହୁଛି । ଝିଅକୁ ଡାକ !

ଗୋଲାବ - ଝିଅଟା ପରା କାଲି ଠାରୁ କିଛି ଖାଇନି । ସେ କଥା ମନେଅଛି ନା ନାହିଁ । ନଖାଇ ନ ପିଇ ତାକୁ ଖଟେଇ ଖଟେଇ ମାରିବୁନା କ'ଣ ? ଏମିତି କରି ତ ଦି'ଦିଟା ପୁଅର ଜୀବନ ସାଇଲୁ ଜଣକୁ ଜରି ତ ଆଉ ଜଣକୁ ବୋତଲ ଗୋଟେଇ ବିକିବାକୁ ପଠେଇଲୁ । ସେମାନେ ରୋଜଗାର କଲେ, ଆଉ ତୁ ନିତି ସଞ୍ଜକୁ ମାଲପିଇ ମାତାଲ ହେଲୁ । ଏବେ ଦେଖ ଦି ଜଣ ଯାକ ପୁଅ ବାରବୁଲା । ନିଶା ପାଣି କରି ସେମାନେ ଘରକୁ ଆସୁନାହାନ୍ତି । କେବେ ବସ୍‌ଷ୍ଟାଣ୍ଡରେ ତ କେବେ ପ୍ଲାଟଫର୍ମରେ ଜୀବନ କଟେଇ ଦେଉଛନ୍ତି । କ'ଣ ଖାଉଛନ୍ତି କ'ଣ ପିନ୍ଧୁଛନ୍ତି । ସେ କଥା ଆମକୁ କାହାକୁ ଜଣାନାହିଁ । ସେଥିରେ ପୁଣି ତୋର ଭେଳିକି ଭେଳି ରୂପର ଦାଉ ନିତି କିଏ ସହିବ ? କାହିଁକି ବା ସହିବ, (କାନ୍ଦି) ଏମିତି ଜୀବନ ପାଇଛି ଯେ ଛୁଆଙ୍କ

ମୁହଁରେ ଆହାର ବି'ଟିକିଏ ଦେଇପାରୁନି। ଆରେ ଚଢ଼େଇବି ନିଜେ ନଖାଇ ଥଣ୍ଟରେ ଖାଇବା ଆଣି ତା' ପିଲାଙ୍କୁ ଆହାର ଖୁଆଉଛି। ଆଉ ଆମେ ଛୁଆଙ୍କ ମୁହଁରୁ ଆହାର ଛଡ଼େଇ ନିଶା ପାଣି କରି ବୁଲୁଛୁ।

ମଙ୍ଗଲୁ - ହେଲା ହେଲା... ଆମର ଭୁଲ ହୋଇଗଲା। ଆଉ ଦିନେ ପିଇବି ନାହିଁ। ନା ବିଲକୁଲ ପିଇବି ନାହିଁ। ମୋ ମଥା ଛୁଇଁ ରାଣ ଖାଉଛି....ହେଲା .. ଯାଆ କାଲିକି ଡାକିଦେ ବାହାରିପଡ଼ିବା।

ଗୋଲାବ - କାହିଁକି ମିଛ ରାଣ ଗୁଡ଼ା ଖାଉଛୁ। ସେ ମିଛୁଆ ରାଧୁଆ ଗପ ଥରେ ନୁହେଁ ହଜାରେ ଥର ଶୁଣିଲିଣି। ତୁ ଯାଇ ତାକୁ ଡାକୁନୁ। ସେ ଶୋଇଛି।

ମଙ୍ଗଲୁ - ତୁ ଯାଇ ଉଠେଇ ଦେଉନୁ .. ବେଲ ଗଡିଯାଉଛି, ପରା...।

ଗୋଲାବ - ତା ଦେହରେ ତାତି। ତାକୁ ଜ୍ୱର ହୋଇଛି।

ମଙ୍ଗଲୁ - ଏଁ ...ତାକୁ ଜ୍ୱର ହୋଇଛି ? ସେଇ କଥା କହୁନୁ। ତାକୁ ବି ଡାକ୍ତରଖାନା ନେଇତେ ହେବ ନା କିସ ?

ଗୋଲାବ - ଆଗେ ଖାଇବାକୁ ଦେବାକୁ ହେବ।

ମଙ୍ଗଲୁ - ତା'ଘରେ କ'ଣ ଅଛି ତାକୁ ଖାଇବାକୁ ଦେଉନୁ। ତୋତେ କିଏ ମନା କରୁଛି।

ଗୋଲାବ - କାଲିର ଭାତରେ ପାଣି ପୁରେଇ ଦେଇଥିଲି ସେଇ ପଖାଳ ସେମିତି ଥୁଆ ହୋଇଛି ହେଲେ କ'ଣ ଲଗେଇ ଖାଇବ ସିଏ ?

ମଙ୍ଗଲୁ - ଆଳୁ ଶିଝେଇ ଦେଉନୁ।

ଗୋଲାବ୍ - କାଲିଠୁଁ ମନା କରିଦେଇଛି ଅଣ୍ଡାତରକାରି ନହେଲେ ସେ ଭାତ ଖାଇବ ନାହିଁ।

ମଙ୍ଗଲୁ - ଏଇନେ ଅଣ୍ଡା କେମିତି ଆଣିବି। ପାଖରେ ତ ପଇସା ନାହିଁ ?

ଗୋଲାବ - କାଲି ଯେତେବେଳେ ପାଖରେ ପଇସା ଥିଲା । କହୁଥିଲି କିଛି ରଖିଦିଅ, ସୁବିଧା ଅସୁବିଧାରେ କାମରେ ଆସିବ। ସେତେବେଳେ ମୋ କଥାକୁ ଉଡ଼େଇ ଦେଲ ..ମୁଣ୍ଡରେ ନିଶା ପାଣିର ପିତ୍ତ ଚଢ଼ିଥିଲା ନା..। ଭଲ କଥା ସବୁ ଭେଲ ଭଳି ଲାଗିଲା। ଏଇନେ ଝିଅକୁ କେମିତି ବୁଝେଇବ ବୁଝାଅ। ଜ୍ୱର ହୋଇଛି ବୋଲି ସରକାରୀ ଡାକ୍ତାରଖାନା ସିନା ନେଇଯିବ, ଔଷଧ ଆଣିବ କେଉଁଠୁ ? ରୋଗୀ ପାଇଁ ଖାଇବା ଆଣିବ କେମିତି ? ଆମରତ ବି.ପି.ଏଲ୍. କାର୍ଡ଼ ନାହିଁ କି , ଆଧାର କାର୍ଡ଼ ବି ନାହିଁ। ସେ କଥା ଟିକିଏ ଭାବ।

ମଙ୍ଗଲୁ - ମୁଁ ତା' ହେଲେ ଯାଉଛି। ଟେସନ ଛକରେ ବସିବି। ଆଜି ଠିକାଦାର ସାଙ୍ଗରେ ଯାଇ ବାଲିସିମେଟ କାମ କରିବି। ସଞ୍ଜକୁ ଫେରିଲେ ତା'ପାଇଁ ଅଣ୍ଡା ଧରି ଆସିବି। ତାକୁ ବୁଝେଇ ସୁଝେଇ ଏବେ କ'ଣ ଦି'ଟା ଖୁଆଇ ଦେ...।

ଗୋଲାବ - ମିଛ କୁ ସତ କହି କାହାକୁ କେତେ ବୁଝେଇ ବି ଯେ, ସେ କ'ଣ ଛୋଟ ପିଲା ହୋଇଛି। ତୋ କଥା କେତେ ସତ କେତେ ମିଛ, ସେକଥା କ'ଣ ସେ ଜାଣିନି। ନା ଜାଣିପାରୁନି ? କାମକୁ ଯିବୁଯଦି ସହଳ ବାହାରି ଯାଅ। ହେଲେ ଫେରିଲା ବେଳେ ଅଣ୍ଡା ଆଣିବାକୁ ଯେମିତି ନଭୁଲୁ -ନହେଲେ ....

ମଙ୍ଗଲୁ - ଥାଉ ଥାଉ ଆଉ କହିତେ ହବାର ନାହିଁ । ମୁଁ ଫେରିଲେ ଦେଖିବୁ- (ପ୍ରସ୍ଥାନ) (କାଲି ଘର ଭିତରୁ ନିଦରୁ ଉଠି ହାଇ ମାରି ପ୍ରବେଶ)

କାଲି - ମାଆ - ବାପା କାହିଁ...।

ଗୋଲାବ - କାମକୁ ଗଲା। ବାଲି ସିମେଣ୍ଟ କାମ କରି ସଞ୍ଜକୁ ଫେରିବ । ଆସିବା ବେଳେ ତୋ ପାଇଁ ଅଣ୍ଡା ନେଇ ଆସିବ। ତୁ ଯାଆ ଏବେ ଦାନ୍ତ ଘସି ଆସି ପଖାଳ ଗଣ୍ଡେ ଖାଇ ଟୋରାଣି ପିଇଦେ। ଜ୍ୱର ଓହ୍ଲେଇ ଯିବ।

କାଲି - ନା, ନା ମୁଁ ଖାଇବି ନାହିଁ। ମୁଁ ଖାଇଦେଲେ, ବାପା ବି' ସଞ୍ଜକୁ ନିଶା ଖାଇ ଦେଇ ଆସିବ। ମୋ ପାଇଁ ଅଣ୍ଡା ଆଣିବ ନାହିଁ। ମୁଁ ଜାଣେ।

ଗୋଲାବ - ନ ଖାଇ ନ ପିଇ କେତେଦିନ ବଂଚିବୁ ? ତୋ ବାପା କଥାତ ଜାଣିଛୁ।
କାଳି - ଜାଣିଛି ବୋଲି ତ କହୁଛି। ମୁଁ ତାହାରି ଝିଅଟି ? ନଖାଇ ନପିଇ ମରିଯିବି ପଛେ ହେଲେ ତା' ନିଶା ପାଣି ପିଇବା ନଛଡ଼େଇ ଛଡ଼ିବି ନାହିଁ। ତୁ ଜନ୍ମାରୁ ବ୍ୟସ୍ତ ହଅନା ମାଆ, ତୁ ତୋର କାମଦାମ ସାରି ଖାଇ ପିଇ ଶୋଇପଡିବୁ ମୁଁ ଟିକିଏ ବୁଲି ଆସେ।
ଗୋଲାବ - ତୋ ଦେହରେ ପରା ଜ୍ୱର ଅଛି।
କାଳି - ଥାଉ। ମୁଁ ବୁଲିଗଲେ ସେ ଆପେ ଛାଡ଼ିପଳେଇବ।
ଗୋଲାବ - କୁଆଡେ ଯାଉଛୁ ?
କାଳି - ନଈ କୂଳକୁ। ନଈ ପାଣିରେ ଗାଧୋଇ, ପାଧୋଇ ଖାଇପିଇ ଆସିବି।
ଗୋଲାବ - (ହସି) ସେଠି ତୋତେ କିଏ ଖାଇବାକୁ ଦେବ ଲୋ ହୁଣ୍ଡି।
କାଳି - ନାଇଁ ନାଇଁ ମୁଁ କ'ଣ ଖାଇବା କଥା କହିଲି କି ? ମୁଁ ଆଗେ ଗାଧେଇପାଧେଇ ଆସେ.. ତା'ପରେ ଖାଇବା କଥା ଭାବିବି। ତୁ ଯା' ତୋ ପାଇଟି ସାରି ଖାଇ ପିଇ ଦେ (ପ୍ରସ୍ଥାନ)
ଗୋଲାବ - ସହଳ ଆସିବୁ। ଉଛୁର କରିବୁ ନାହିଁ। ମାଆର ମନ କେମିତି ସହିବ ? ଛୁଆଟାକୁ ଖାଇବାକୁ ନଦେଇ ନିଜେ ପେଟ ପୂରାଇ ଖାଇ ପିଇ ଆରାମ କରବି ? ମୁଁ ତୋର ମାଆ ନା ଡାହାଣୀ ? (କାନ୍ଦିଲା)
(ଦୃଶ୍ୟ ବଦଳି ଯିବା ସଙ୍ଗେ ସଙ୍ଗେ ଦେଖାଗଲା କାଳି ନାଚିନାଚି ଚାଲିଛି।) (ଏକ ସାଙ୍ଗରେ Stage Up Rightରେ କାଳିର ଘରର ଦୃଶ୍ୟ ମାଆ ଗୋଲାବ ପାଇଟି କରୁଛି ମଝିରେ ମଝିରେ ବାହାର କୁ ଆସି କାଳିର ପ୍ରତୀକ୍ଷା କରୁଛି ଓ ଡାକୁଛି। ଏପେଟେ Stage Down Leftରେ ସ୍କୁଲର ଦୃଶ୍ୟ ଆଲୁଅ ର ଛାଇ ଅନ୍ଧାର ଭିତରେ ପର୍ଯ୍ୟାୟ କ୍ରମରେ ଦୁଇଟି ସ୍ଥାନର ଦୃଶ୍ୟ ଏକ କାଳିନ ମଞ୍ଚଉପରେ ପ୍ରଦର୍ଶନ କରାଯାଇ ପାରିବ।
ଗୁରୁମା - ଆସ କାଳି ଭିତରକୁ ଆସ। ବାଇଚଢ଼େଇ ଗୀତ ଶିଖିଦେଇଛ ?
କାଳି - ହଁ ଗୁରୁମା। ଗାଇବି ?
ଗୁରୁମା - ଗାଇଲ ଶୁଣିବା।
କାଳି - (ଗୀତ ଗାଇଛି)
ଗୁରୁମା - ବାଃ ସୁନ୍ଦର ଖୁବ୍ ସୁନ୍ଦର। ସୁନା ଝିଅ ଏଇ ନିଅ । ତୁମ ପାଇଁ ଜାମା ପିନ୍ଧିପକାଅ । ତା'ପରେ ତୁମକୁ ନୂଆ ଗୀତ ଶିଖେଇଦେବି।
କାଳି - ନୂଆ ଗୀତ ଗାଇଲ ଗାଇଲ ମୁଁ ଶିଖିବି। (ପୋଷାକ ନେଇ ଭିତରକୁ ଗଲା)
ଗୁରୁମା - ଚକା ଚକା ଭଅଁରୀ, ମାମୁଁ ଘର ଚଉଁରୀ।
କାଳି - (ଭିତରୁ ଗୀତ ଗାଇଲା)।
ଗୁରୁମା - ମାମୁଁ ମୋତେ ମାଇଲେ, ଭୂଇଁରେ ମୁଁ ପଇଲି।
କାଳି - (ଗୀତ ଗାଇଲା)।
ଗୁରୁମା - ମାଇଁ ମୋତେ ଧଇଲେ ଦୁଧଭାତ ଖୋଇଲେ। ଚକା ଚକା ଭଉଁରୀ, ମାମୁଁ ଘର ଚଉଁରୀ।
କାଳି - (ପୋଷାକ ପିନ୍ଧି ଗୀତ ଗାଉ ଗାଉ ପଶିଆସିଲା)।
ଗୁରୁମା - ବାଃ ବଢ଼ିଆ ଆଉ ଥରେ ଗାଇଲ।
କାଳି - (ପୁଣି ନାଚି ନାଚି ଗାଇଲା)।

ଗୁରୁମା - ଏଇ ନିଅ ତୁମର ବହି ବସ୍ତାନି। ଏଥିରେ ଖାତ, ବହି, କଲମ, ପେନ୍‌ସିଲ୍, ରବର ସବୁ ଅଛି। ଘରେ ଯାଇ ଛବି ବହି ଦେଖିବ ଅ, ଆ ଲେଖିବ।

କାଲି - ହଁ ଗୁରୁମା। କାଲି ଆଣି ଆପଣଙ୍କୁ ସବୁ ଦେଖେଇବି।

ଗୁରୁମା - ସୁନା ପିଲା ଏବେ ଚାଲ ମଧ୍ୟାହ୍ନଭୋଜନ ଖାଇବା।

(ଦୃଶ୍ୟାନ୍ତର)

କାଲି - (ଦେହରେ Schoolର ପୋଷାକ, ହାତରେ ବସ୍ତାନି) ଚକା ଚକା ଭଉଁରୀ ମାମୁଁ ଘର ଚଉଁରୀ (ଘରେ ପହଞ୍ଚିଲା ବେଳକୁ)

ଗୋଲାବ - ଏତେ ବେଳ ଯାଏ ତୁ କୁଆଡେ ଯାଇଥିଲୁ? ଦେହରେ ନୂଆ ଜାମା, ହାତରେ ବ୍ୟାଗ, କଏ ଦେଲା? ସତ କହ, ନହେଲେ ...

କାଲି - ରହ... ଏତେ ରାଗୁଛୁ କାହିଁକି ? ମୁଁ କାହାକୁ ମାଗିକି ଆଣିନି। କି ଚୋରୀ କରି ଆଣିନି। ମୋତେ ଗୁରୁମା ଦେଇଚନ୍ତି।

ଗୋଲାବ - କାହିଁକି? ସେ କ'ଣ ତୋତେ, ତାଙ୍କ ଘରେ ଚାକରାଣୀ ରଖିବେ ନା କ'ଣ?

କାଲି - ନା ନା- ସେ ଦେଇ ନାହାଁନ୍ତି। ସରକାର ଦେଇଛନ୍ତି। ଗରୀବ ଛୁଆଙ୍କୁ ବହି, ବସ୍ତାନି, ଜାମା, ଖାଇବା, ସବୁ, ସରକାର ଦେଉଛନ୍ତି। ମାଆ ...ମାଆ..ମୁଁ ପାଠ ପଢ଼ିବି! ସ୍କୁଲରେ କେତେ ଗୀତ ଶିଖା ହେଉଛି, କେତେ ଗପ କୁହା ହେଉଛି। ବାଇଚଢ଼େଇ ଗୀତ, ବାଘ ମାମୁଁ ଗପ...ଚକାଚକା ଭଉଁରୀ, ମାମୁଁ ଘର ଚଉଁରୀ ମୁଁ ସେଇଠି କି ଯିବି ଗୀତ ଶିଖିବି। ଆଚ୍ଛା... ମାଆ ମାଆ ମୋ ମାମୁଁ ଘର କେଉଁଠି? ଆମେ କାହିଁକି ମାମୁଁ ଘରକୁ ଯାଉନେ...

ଗୋଲାବ - ସେ କଥା ଛାଡ଼.. ଆଗ ଖାଇବୁ ଚାଲ।

କାଲି - ନା ମୁଁ ଖାଇବି ନାହିଁ। ସ୍କୁଲରେ ଖାଇଛି।

ଗୋଲାବ - ସ୍କୁଲରେ ତୋତେ କିଏ ଖାଇବାକୁ ଦେଲା। ସେଠି ତୁ କ'ଣ ଖାଇଲୁ ?

କାଲି - ଅଣ୍ଡା ତରକାରି ଭାତ, ଡାଲି। ପେଟ ଭରି ଖାଇଚି। ଆଚ୍ଛା ମାଆ, ମୋ ମାମୁଁ ଘର କଥା କହିଲୁ ନାହିଁତ ? କହନା।

ଗୋଲାବ - (କାନ୍ଦିଲା) କ'ଣ କହିବି। କେମିତି କହିବି ତୋ ମାମୁଁ ଘରର କଥା। ତୋ ଅଜାଘର ଥିଲା ବାଂଲାଦେଶରେ ଯେତେବେଳେ ମୁଁ ତୋ ଠାରୁ ଆହୁରି ଛୋଟ ହୋଇଥିଲି। ଆମେ ଭାଇ ଭଉଣୀ ଥିଲୁ ୪ଜଣ। ତୋ ଅଜା ଆଇ ଆମକୁ ଧରି ଡଙ୍ଗାରେ ସମୁଦ୍ର ଭିତର ଦେଇ ଏ ଦେଶକୁ ପଳେଇ ଆସିଥିଲେ। ତା'ପରଠୁଁ, ଯେଉଁଠି,ଯେଉଁ ସହର ତଳରେ ଆମେ ରହିଲୁ ସେଇଟା ଆମର ଘର। ଗୋଟିଏ ଜାଗା ଥିଲେ ସିନା କହିବି। ହେତୁ ହେଲା ଦିନୁ ଏ ସହର ସେ ସହର ବୁଲି କେଉଁଠି ଗଛ ମୂଳରେ ତ କେଉଁଠି ରେଳଲାଇନ କଡ଼ରେ ଝୁମ୍ପୁଡ଼ି ବନେଇ ଆମେ ରହୁଥିଲୁ। ତା' ପରଠୁଁ ଆଉ କେବେ ବି ଆମ ଦେଶକୁ ଫେରି ଯାଇନୁ, ପିଲାଦିନେ ମୁଁ ବାଉଁଶ ରାଣୀ ଖେଳୁଥିଲି, ଭାଇ ମାନେ ଟ୍ରେନରେ ଫେରି କରି ବୁଲୁଥିଲେ। ସଞ୍ଜକୁ ସମସ୍ତେ ଫେରି ଆସି ଖାଇପିଇ ସେଇ ଝୁମ୍ପୁଡ଼ିରେ ଶୋଉଥିଲୁ। ଭଉଣୀ ଥିଲା ସବୁଠୁଁ ବଡ଼। ଦିନେ ସେ କାହା ସାଙ୍ଗରେ ପଳେଇଲା। ଭାଇ ମାନେ ତାକୁ ଖୋଜିଲେ, ତାକୁ ଖୋଜୁ ଖୋଜୁ ସେମାନେ ବି' ଦିନେ ହଜିଗଲେ। କେଉଁଠି କେଜାଣି। ଆଉ ଝୁମ୍ପୁଡ଼ିକୁ ଫେରିଲେ ନାହିଁ। ବୋଧ ହୁଏ ଆଉ କେଉଁଠି ବସା ବାନ୍ଧିଲେ। ଏକା ହୋଇ ରହିଗଲି ମୁଁ। ମୁଁ ଟିକିଏ ବଡ଼ ହୋଇଛି କି ନାହିଁ। ତୋ ବାଆ' ସାଙ୍ଗରେ ପଳେଇ ଆସିଲି। ସେଇଦିନଠୁ ତୋ ମାମୁଁ ଘର ରହିଗଲା ବହୁତ ପଛରେ..। ତା'ପରର କଥା, ନା ମୁଁ ଜାଣିଛି ନା କେବେ ଜାଣିବାକୁ ଚେଷ୍ଟା କରିଛି।

କାଳି - ମୋ ଅଜା.. ଆଈ ?

ଗୋଲାବ - (କାନ୍ଦି) ସେମାନେ ଏବେ କେଉଁଠି ଥିବେ କେଜାଣି ? ବଞ୍ଚିଛନ୍ତି କି ମରିହଜି ଗଲେଣି। ତାଙ୍କ ଖବର ବା କିଏ ରଖିଛି ?

କାଳି - (କାନ୍ଦି) ଘୂରିଘୂରିକା ନାରୀ .. ଯିଏ ପାଇବ ତାହାରି। ମାଆ ଖୋଜିଲେ ବି କ'ଣ ସେମାନେ ଆଉ ଆମକୁ ମିଳିବେ ନାହିଁ ?

ଗୋଲାବ - କେଜାଣି ...। ଥରେ ବସା ଭାଙ୍ଗି ଚଢ଼େଇ ଉଡ଼ିଗଲା ପରେ ତା ଠିକଣା ଖୋଜିଲେ ବା ଆଉ କେଉଁଠୁ ମିଳିବ ?

କାଳି - ମାଆ...ମୁଁ ପାଠ ପଢ଼ିବି। ସେଇ ହଜିଗଲା ଚଢ଼େଇର ଠିକଣା ଖୋଜିବି। ମୋ ନିଜ ଠିକଣା ମୁଁ ତିଆରି କରିବି। ଏତେ ବଡ଼ ଦୁନିଆଁରେ ଗୋଟିଏ ଠିକଣା କ'ଣ ଆମେ ତିଆରି କରି ପାରିବାନି ମାଆ ? ଆମେ ବି' କ'ଣ ଏମିତି ବିନା ଠିକଣାରେ, ବିନା ପରିଚୟରେ - ମରିହଜି ଯିବା ? ମୋ ଭାଇ ମାନେ ଆଉ ଏଠିକି ଆସୁନାହାଁନ୍ତି। ସେମାନଙ୍କ ଠିକଣା ତ ଆଉ ତୋ ପାଖରେ ନାହିଁ କିନ୍ତୁ ସେମାନଙ୍କ ପରିଚୟ ତୁ କ'ଣ ହଜେଇ ସାରିଲୁଣି ? ତାଙ୍କ କଥା କ'ଣ କେବେବି ତୋ'ର ମନେ ପଡୁନି ?

ଗୋଲାବ - (କାନ୍ଦି) ବହୁତ ମନେ ପଡୁଛି ରେ ମାଆ ହେଲେ କ'ଣ କରିବା କହ ଆମ ଜୀବନ ତ ସେମିତି। ବୁଲା କୁକୁର ଭଳି ଆମର ସବୁ ସମ୍ପର୍କ। ରାସ୍ତାକଡ଼ରେ ଆମର ଜନ୍ମ, ସେଇଠି ଘର ତିଆରି କରୁ ପୁଣି ସେଇଠି ମରିହଜି ଯାଉ- କେବଳ ନିଜ ଦେହକୁ ଛାଡ଼ିଦେଲେ ଆମର ନାଅଛି ଜ୍ଞାତି ନା କୁଟୁମ୍ବ .. ଆମ ଜନ୍ମ ମରଣର ତାରିଖ ଆଉ ଠିକଣା ବି ଆମକୁ ଅଜଣା।

କାଳି - ମୁଁ ପାଠ ପଢ଼ିବି ମାଆ ...ନହେଲେ ... ମଣିଷର ଏଇ ଭିଡ଼ ଭିତରେ ମୁଁ ବି ଦିନେ ହଜିଯିବି। ମୁଁ ଉଡ଼ିବି ମାଆ..କାରଣ ମୁଁ ହଜିଯିବା କୁ ଋହେଁ ନାହିଁ। ମୁଁ ହାରି ଯିବାକୁ ଋହେଁ ନାହିଁ। ...ମୁଁ ପାଠ ପଢ଼ିବି ମାଆ ମୁଁ ନିଜେ ନିଜର ପରିଚୟ ତିଆରି କରିବି। ନିଜର ଠିକଣା ତିଆରି କରିବି।

ଗୋଲାବ - ପାଠ ପଢ଼ିବା ପାଇଁ ପଇସା ଦରକାର। ଆମର ପଇସା କାହିଁ ନା ତୋତେ ପଢେଇବାର ତାକତ କାହିଁ ?

କାଳି - ଗୁରୁମା କହୁଥିଲେ, ସରକାର ପଢ଼େଇବେ। ତୁ ମୋତେ ସ୍କୁଲ ନେଇ ଋଲ। ସେଠି ନା ଲେଖେଇଦେ । ମୁଁ ପାଠ ପଢ଼ିବି, ଉଡ଼ିବା ଶିଖିବି। ବାଇଚଢ଼େଇ ପରି ଖଣ୍ଡି ଉଡ଼ା ମାରି ଉଡ଼ିବି ପଛେ କିନ୍ତୁ ଉଡ଼ିବା ଶିଖିବି। ନିଶ୍ଚେ ଉଡ଼ିବି।

ଗୋଲାବ - ଏକଥା ତୁ ମୋତେ କହିଲୁ କହିଲୁ। ତୋ ବାପାକୁ କହିବୁ ନାହିଁ। ସିଏ ଶୁଣିଲେ ତୋତେ ଜୀବନରୁ ମାରିଦେବ।

କାଳି - ସିଏ ତ ଜୀବନରେ ଦିଅକ୍ଷର ପାଠ ପଢ଼ିଲାନାହିଁ । ସେଇଥିପାଇଁ ଆମକୁ ବି ପଢ଼େଇ ବାକୁ ଦେଉନାହିଁ। କେତେ ଛୁଆ ସ୍କୁଲରେ ପଢୁଛନ୍ତି। ମୁଁ ପଢ଼ିଲେ ତୋର ଅସୁବିଧା କ'ଣ ?

ଗୋଲାବ - ତୁ ପାଠ ପଢ଼ିଲେ ବାଉଁଶ ରାଣୀ ହବ କିଏ ? ଆମେ ଖାଇବୁ କ'ଣ ? ବଂଚିବୁ କେମିତି ?

କାଳି - ବାପା ଯେମିତି ଆଜି କାମକୁ ଯାଇଛି। ତୁମେ ଦି'ଜଣ ସେମିତି କାମ କରିବ। ନିଜେ ଖୁସିରେ ବଂଚିବ ଆଉ ମୋତେ ପାଠ ପଢ଼େଇବ। ମୁଁ ବଡ଼ ହୋଇ ରୋଜଗାର କଲେ ତୁମ ସୁଖ ଦୁଃଖ କଥା ବୁଝିବି। ତୁମ ନାଁ ରଖିବି।

ଗୋଲାବ - ତୋ ବାପା ଆସୁ ତାକୁ କହିବୁ। ମୋ ପାଖରେ କ'ଣ ପଇସା ଅଛି ନା ମୋ କଥାର କିଛି ଦାମ୍ ଅଛି ଯେ ତୋତେ କଥା ଦେବି।

କାଳି - ଜୀବନ ସାରା କ'ଣ ଏମିତି ବାର ବୁଲା ହୋଇ ରହିବାକୁ ପଣ କରିଛୁ ? ଏଥିରୁ କି ସୁଖ ବା ତୋତେ ମିଳୁଛି କେଜାଣି ? ମୋକଥା ମାନ .. ବାପାଙ୍କୁ କହ ସେ ମୂଲିଆ କାମ କରିବେ, ତୁ ଘର ଘର ବୁଲି ଝାଡୁ ପୋଛା କରିବୁ । କହିବୁ ଯଦି ମୁଁ ବି ତୁମକୁ ଘରକାମରେ ସାହାଯ୍ୟ କରିବି। ଦେଖିବୁ ବେଶ୍ ଦିପଇସା

ମିଳିବ। ସେଇଥିରେ ଆମେ ଝୁମ୍ପୁଡ଼ି ଘର ଖଣ୍ଡେ କରି ରହିବା। ମୁଁ ନିଇତି ଘର ପାଇଟି ସାରି ପାଠ ପଢ଼ିବି। ତୋର ଅସୁବିଧା କ'ଣ? (ପ୍ରବେଶ କଲା ମଙ୍ଗଲୁ, ମଦଖାଇ ଗୀତ ଗାଇଗାଇ ଆସିଲା)

ମଙ୍ଗଲୁ - (ସ୍ତ୍ରୀ କୁ) ଏଇ ନେ ଏଇନେ ତିନିଟା ସିଝା ଅଣ୍ଡା ଅଛି ୨ଟା ଝିଅର ଗୋଟିଏ ତୋର।

ଗୋଲାବ - ଆଉ ଋଉଳ, ଡାଲି,

ମଙ୍ଗଲୁ - ମୋ ନାଁ କହି ଦୋକାନରୁ ନେଇ ଆ...

ଗୋଲାବ - ମନେ ମନେ ଜମିଦାର କି ମାମଲତକାର ବୋଲି ଭାବୁଛୁ କେଜାଣି। ଦେଖୁଛୁ ତ ଝିଅ! ଏଇ ତୋ ବାପ - ଯାହା ରୋଜଗାର କଲା ତା' ନିଶା ପାଣିକୁ ନିଅଣ୍ଟ। ଇଏ ତୋତେ ପାଠ ପଢ଼େଇବ?

ମଙ୍ଗଲୁ - (କାଳି କୁ ଦେଖି) ଇଏ କିଏ?

ଗୋଲାବ - କାଳି ପରା.. ତାକୁ ଚିହ୍ନିପାରୁନ..

ମଙ୍ଗଲୁ - (ହସି) ଆରେ ତୁ ଏ ପୋଷାକ କେଉଁଠୁ ପାଇଲୁ? ତୋତେ ଦେଲା କିଏ?

ଗୋଲାବ୍ - (ଝିଅକୁ) ତୁ କହୁନୁ..(ମଙ୍ଗୁଲୁକୁ) ତାକୁ ପଋରୁନ ...ମୁଁ କିମିତି ଜାଣିବି? କହୁନୁ କହ ?

କାଳି - ଗୁରୁମା... ଦେଇଛନ୍ତି... ଏଇ ଜାମା, ବହି, ବସ୍ତାନି, ଖାତା। ମୁଁ ପାଠ ପଢ଼ିବି।

ମଙ୍ଗଲୁ - ( ନିଶା କଟିଗଲା। ରାଗରେ ଫଁ ଫଁ ହୋଇ ଦି ଜଣଙ୍କୁ ଅନେଇଲା) କି କହିଲୁ ତୁ ପାଠ ପଢ଼ିବୁ? ଆମାର ଘରର ଝିଅ ହୋଇ ତୁ ବଜାରକେ ପାଠ ପଢ଼ିତେ ଯିବି? ଆମାର ଇଜ୍ଜତ ରହିବଟି? ନାଇଁ ନାଇଁ ଆମର ଘରେ ମୋର ଚଉଦ ପୁରୁଷ କେହି ପାଠ ପଢ଼ିନାହିଁ, କି କେହି ପାଠ ପଢ଼ିବେ ନାହିଁ। ଶେଷରେ ତୁ ବାରବୁଲା ହେବୁ ? ତୁ ସେଠିକି ଯାଇ ପାରିବୁ ନାହିଁ।

କାଳି - ଠିକ୍ ଅଛି ମୁଁ କୁଆଡେ ଯିବିନି...କି ବାଉଁଶ ରାଣୀ ବି ହେବିନି । ମୋତେ କେହି କିଛି ବାଧ କରିବନାହିଁ।

ମଙ୍ଗଲୁ - ହଁ, କ'ଣ କହିଲୁ ବାଉଁଶ ରାଣୀ ହବୁନି ? ତା ହେଲେ ଖାଇବୁ କିସ ? ଚଳିବୁ କେମିତି?

କାଳି - ସେ କଥା ତୁମେ ମାନେ ଜାଣିଛ। ଏଇଲେ କହିଲୁ ପରା ମୁଁ ବଜାରକୁ ବାହାରି ବି ନାହିଁ ବୋଲି। ବାଶ୍ - ଆଜି ତୁ ଯେମିତି ମୂଲ ଲାଗିବାକୁ ଗଲୁ ସେମିତି ତୁମେ ଦି'ଜଣ ମୂଲ ଲାଗିବ। ନିଜେ ଖାଇବ ଆଉ ମୋତେ ଖୁଆଇବ।

ମଙ୍ଗଲୁ - ଆଉ ତୁ କି ଖାଲି ବସି ବସି ଗେଲ୍ପା ମାରିବି?

କାଳି - ପାଠ ପଢ଼ିବି।

ମଙ୍ଗଲୁ - କି କହିଲି ଆମାର କଥା ଉପରେ ଜବାବ ଦେଉଛି? ଏଇ ପାଠ ତାହେଲେ ତୋ ମୁଣ୍ଡରେ ଭୂତ ପୁରେଇଛି। ଦଉଛି ରହିଥା (ବହି ବସ୍ତାନି ଛଡ଼େି ଫୋପାଡ଼ି ଦେଲା, ମାଆ ବାଧା ଦେଲାରୁ ତାକୁ ଠେଲି ଦେଲା) ତୁ ଚୁପ୍ କର। ସେଇ ଗୁରୁଜୀ ତୋ'ର ମଥା ଖରାପ କରି ଦେଇଛି। ଆଜି ସମସ୍ତଙ୍କେ ସାବାଡ଼ କରିଦେବି। (ଝିଅର ଜାମ ଧରି ଟାଣିଛି। ମାଆ ପନଖି ଉଠାଇ ଧାଇଁ ଆସିଲା)

ଗୋଲାବ - ହେ ପୋଡା ମୁହାଁ ...ଛାଡ଼ତାକୁ କହୁଛି। ମୋ ଉପରେ ତୁ ଢ଼େର ମରଦ ପଣିଆ ଦେଖେଇ ହେଇଛୁ। ମୁଁ ସହିଯାଉଛି। ହେଲେ ମୋ ଝିଅ ଦେହରେ ଯଦି ଟିପଟେ ଲଗେଇଛୁ ତ ଏଇ ପନିଖିରେ ହାଣି ଟିକିଟିକି କରିଦେବି। ଜାଣିଥା... ଆଜି ଯାକେ ମୁଁ ତୋ ରୂପ ଅନେକ ଦେଖିଲିଣି। ଏଣି କି ତୁ ମୋ ରୂପ ଦେଖିବୁ ଜାଣିଥା.. ଛାଡ଼ ତାକୁ। (କାଳି ତା ବାପାକୁ ଠେଲି ଦେଇ ବହିବସ୍ତାନି ଗୋଟେଇ ଧରିଲା। ନେପଥ୍ୟରୁ ବାଜିଉଠିଲା "ବାଇ ଚଢ଼େଇର ଗୀତ। ଦେଖାଗଲା କାଳି ଉପରେ ଆଲୁଅ ଅନ୍ୟ ସ୍ଥାନ ସବୁ ଅନ୍ଧାର। ଧୀରେ ଧୀରେ କାଳି ଯେମିତି ପାଠ ପଢ଼ିବାର ଶପଥ ନେଲା)

**(ଅନ୍ଧାର)**

## ୩ୟ ଦୃଶ୍ୟ

**(ସକାଳର ଦୃଶ୍ୟ ଦେଖାଗଲା କାଲି ତରତର ହୋଇ ବାଉଁଶ ରାଣୀ ହେବାର ଜିନିଷ ପତ୍ର ଗୋଟେଇବାରେ ଲାଗିଛି)**

କାଳି - ମାଆ ! ମୁଁ ବାହାରି ପଡ଼ିଲିଣି, ତୁମେ ମାନେ ଜଲଦି ଜଲଦି ବାହାରି ପଡ଼, ଆଜି ଷ୍ଟେସନ ଛକରେ ଖେଳ ଦେଖାଇବା ।

ଗୋଲାବ - ତୁ ପରା କାଲି ଖେଳ ଖେଳିବାକୁ ମନା କରୁଥିଲୁ ? ଆଜି ପୁଣି ରାଜି ହେଲୁ କେମିତି ?

କାଲି - (ହସିଛି) ବାପା କାହିଁ ?

ମଙ୍ଗଲୁ - ଏଇତ ଆଇଲି ରେ ଚାଲ ଯିବା । ହାଁ ତୁ କି କହିଲି । ଷ୍ଟେସନ ଛକରେ ଖେଳ କରିବି ବୋଲି । ଷ୍ଟେସନ୍ ଛକରେ କେନେ ?

କାଲି - ଆଜି ଶନିବାର । ଲୋକଙ୍କ ଯିବା ଆସିବା ବଢ଼ିବ । ସେଇଥିପାଇଁ ।

ମଙ୍ଗଲୁ - ଠିକ ଅଛି ଚାଲ ଯିବା ।

କାଲି - ରୁହ । ମୋ କଥାଟିକିଏ ଶୁଣ । ଆଉ ତୁମେମାନେ କ'ଣ ଠିକ କରୁଛ କୁହ ?

ଗୋଲାବ - କି କଥା ...କହୁନୁ ।

କାଲି - ଏଣିକି ମୋ ଇଛାରେ ମୁଁ ବଉଁଶରାଣୀ ଖେଳିବି । କେଉଁଦିନ ଗୋଟିଏ ବେଳା ତ କେଉଁ ଦିନ ଦି'ବେଳା । ମୋତେ କେହି ବାଧ କରିବ ନାହିଁ ।

ମଙ୍ଗଲୁ - ବାଧ କଲେ କି କରିବି ।

କାଲି - ମୁଁ ଖେଳିବି ନାହିଁ । (ମଙ୍ଗଲୁ ଓ ଗୋଲାବ ପରସ୍ପରକୁ ଅନେଇଲେ)

ଗୋଲାବ - ନା...ନା.. ତୋତେ ଆମେ ବାଧ କରିବୁ ନାହିଁ ।

କାଲି - ଠିକ୍ ତ ? (ବାପାଙ୍କୁ ) ତୁ କିଛି କହିଲୁ ନାହିଁ ଯେ.. ?

ମଙ୍ଗଲୁ - ଠିକ୍ ଅଛି । ଯାହା ତୋର ଇଛା, ମୁଇଁ ବାଧ କରିବି ନାହିଁ । ଚାଲ ଏଥର - ।

କାଲି - ଆଉ ଗୋଟିଏ କଥା -ଅଛି । ମନ ଦେଇ ଶୁଣ । ରାଜି ହବତ ମୁଁ ବାଉଁଶରାଣୀ ଖେଳିବି, ନହେଲେ ନାଇଁ ।

ମଙ୍ଗଲୁ - ଆଉ କି କଥା ?

କାଲି - ସବୁଦିନ, ପ୍ରତି ଗୋଟିଏ ଖେଳ ପରେ ଯାହା ପଇସା ମିଳିବ, ସେଥିରୁ ଦଶଟଙ୍କା ମୁଁ ନେବି । ଯେଉଁ ଦିନ ଯେତେଟା ଖେଳ ହେବ, ସେତେଟା ଦଶଟଙ୍କା ମୋର । ରାଜି ଯଦି କୁହ ।

ମଙ୍ଗଲୁ - ଯେଉଁ ଦିନ ୫ଟା ଖେଳ ହେବ ?

କାଲି - ସେଦିନ ୫ଟା ଦଶଟଙ୍କା ମୋର ।

ମଙ୍ଗଲୁ - ଏତେ ପଇସା ନେଇ ତୁ କ'ଣ କରିବୁ ?

କାଲି - ସେ ବିଷୟରେ ମୋତେ କେହି କିଛି ପଚାରିବ ନାହିଁ । ପଚାରିଲେ ବି, ମୁଁ ଉତ୍ତର ଦେବି ନି । ତଥାପି କହିଦେଉଛି ସେ ପଇସା ରେ ମୁଁ ମୋ ମନଇଚ୍ଛା ଖାଇବି । ମାଛ, ଅଣ୍ଡା, ମାଉଁସ, କ୍ଷୀର । ମନଇଚ୍ଛା ପିନ୍ଧିବି । ଟିକିଲି, ଚୁଡ଼ୀ, ନଖରଙ୍ଗ, ଆଖିରେ କଜ୍ଜଳ । ସେ କଥା ଜାଣି ତୁମର ଲାଭ କ'ଣ ?

ଗୋଲାବ - ଠିକ୍ ଅଛି , ତୁ ତୋ ଇଛାରେ ଖର୍ଚ୍ଚ କରିବୁ ।

ମଙ୍ଗଲୁ - ଆଛା ଆଛା, ତୁ ମନଇଛା ଖାଇବୁ ତ ମାଛ, ମାଂସ, ମନଇଛା ପିନ୍ଧିବୁ ତ ? ତା କର କିନ୍ତୁ ବାଜେ ଖର୍ଚ୍ଚ କରିବୁ ନାହିଁ, କି ପାଠ ପଢ଼ା ଜିନିଷ କିଣିବୁ ନାହିଁ ।

କାଳି - (ହସିଲା) ଥରେ କହିଲିନା, ସେ ପଇସା ମୁଁ କ'ଣ କରିବି ସେ କଥାରେ ତୁମେ ମୁଣ୍ଡ ପୂରାଇବ ନାହିଁ। ଦେବଯଦି କୁହ ଗୋଡ଼ କାଢ଼ିବି - ନହେଲେ ନାଇଁ ଶୋଇବି, ଖେଳିବି।

ଗୋଲାବ - (ମଙ୍ଗଲୁକୁ) କ'ଣ କହୁଛ କୁହ..

ମଙ୍ଗଲୁ - ହଉ ହଉ ନେବୁ, କିନ୍ତୁ ବାଜେ ଖର୍ଚ୍ଚ କରିବୁ ନାହିଁ, କି ବହିପତ୍ର କିଣିବୁ ନାହିଁ। ଏବେ ଚାଲ ଡେରି ହୋଇଗଲାଣି।

କାଳି - ତୁମେ ସବୁ ଆଗରେ ଚାଲ ମୁଁ ଯାଉଛି। (ମଙ୍ଗଲୁ ଓ ଗୋଲାବ ବାହାରିଲେ) (ଖୁସିରେ ହସି ଉଠିଲା ଓ ନାଚିଲା , ଗାଇଲା) ବାଇ ଚଢ଼େଇରେ ବାଇଚଢ଼େଇ ...ତୋ ମାଆ ଯାଇଛି ଗାଈ ଚରେଇ...)

(ଅନ୍ଧାର)

## ୪ର୍ଥ ଦୃଶ୍ୟ

**(ଅନ୍ଧାର ଭିତରେ ନେପଥ୍ୟରୁ ଶୁଣା ଗଲା ବାଉଁଶରାଣୀ ର ଗୀତ ଓ ବାଜା....) ନିର୍ଦ୍ଦେଶକ ମଞ୍ଚ କୁ ଅନ୍ଧକାରକରି କେବଳ Cycloramaରେ ଆଲୁଅ ଦେଇ Silhotରେ "କାଳି" ଗୀତଗାଇ ନାଚୁଥିବାର ଦୃଶ୍ୟ ଦେଖାଇପାରନ୍ତି।)**

**(କିମ୍ୱା ଉକ୍ତ ଦୃଶ୍ୟଟି ପ୍ରଥମ ଦୃଶ୍ୟର ଅନୁରୂପରେ କରାଯାଇପାରେ)**

## ପଞ୍ଚମ ଦୃଶ୍ୟ

*(ଖେଳ ପରେ ମଙ୍ଗଲୁ, ଗୋଲାବ ଓ କାଳି ଫେରିଲେ)*

କାଳି - ମାଆ - ଜିନିଷପତ୍ର ସବୁ ଏଇଠି ରହିଲା ...ମୁଁ ଆସୁଛି। (ଘର ଭିତରକୁ ଯାଇ, ବସ୍ତାନି ଓ ସ୍କୁଲ ଫ୍ରକ୍ ଧରି ଆସିଲା)

ଗୋଲାବ - ଆରେ ରହ ରହ ମୁଁ ଗରମ ଗରମ ମୁଠେ ରାନ୍ଧି ଦିଏ ଖାଇ ଦେଇଯିବୁ।

କାଳି - ତୁ ରାନ୍ଧୁ ରାନ୍ଧୁ କେତେ ସମୟତ ଲାଗିବ। ସେତେବେଳକୁ ମୁଁ ଫେରିଆସିବିନି। (ବହି ବସ୍ତାନି ନିଜ ପଛରେ ଲୁଚେଇ ଦେଲା)

ଗୋଲାବ - ତୁ କୁଆଡେ ଯାଉଛୁ ?

କାଳି - (ହସି ଦେଲା) (ସେଇ ହସିରେ ସେ ଯେମିତି କହିଦେଲା ଯେ ସେ ପାଠ ପଢ଼ିବାକୁ ସ୍କୁଲକୁ ଯାଉଛି) (କହିଲା) ଖେଳିବାକୁ..ଚକା ଚକା ଭଉଁରୀ....

ଗୋଲାବ - (ହସି ହସି କହିଲା) ଜଲଦି ଆସିବୁ। (ଦୁଇ ଜଣ ହସିଲେ) (କାଳିର ପ୍ରସ୍ଥାନ)

ମଙ୍ଗଲୁ - (ପ୍ରବେଶ) ଜଲଦି କାହିଁକି ଆସିବି ? ସଉଦା, ପରିବା କିଣି ଆଣିବାକୁ ଡେରି ହେବନା ନାହିଁ ?

ଗୋଲାବ - ହଁ,ହଁ ସେ କଥା ମୁଁ କ'ଣ ଜାଣିନି ? ହାଟ ସାରା ବୁଲିବୁଲି ସଉଦା ଓ ପରିବା କିଣିବାକୁ ୨/୩ ଘଣ୍ଟା ସମୟ ପୁଣି ଲାଗିବ ନା ନାହିଁ।

ମଙ୍ଗଲୁ - ମୋ ସାଙ୍ଗରେ ଇଲେଇତି କରୁଛୁ ନୁହେଁ ? ମୁଁ କ'ଣ ତୋ ଶଳାଯେ ମୋ ସାଙ୍ଗରେ ଥଟ୍ଟା କରୁଛୁ।

ଗୋଲାବ - ଘରକୁ ଆସିଲା ବେଳକୁ ପଛେ ଖାଲି ହାତରେ ଗୀତଗାଇ ଝୁମି ଝୁମି ଆସିଲେ ଚଳିବ।

ମଙ୍ଗଲୁ - ଏ ମୋତେ ଚିଡ଼ାନା କହୁଛି, ଏସବୁ ଜିନିଷ ଏଇଠି ରହିଲା ମୁଁ ଆସୁଛି।

ଗୋଲାବ - ହଁ, ହଁ, ଝିଅ ତା' ଜିନିଷ ସବୁ ଏଇଠି ଫୋପାଡ଼ିଦେଇ ଖେଳିବାକୁ ପଳେଇଲା। ତୁମେ ତୁମର ଜିନିଷ ପତ୍ର ସବୁ ଫୋପାଡ଼ି ଦେଇ ମାଲ ପିଇବାକୁ ପଳେଇବ। ଆଉ ମୁଁ ଏଠି ସମସ୍ତଙ୍କ ପାଇଁ ରୋଷେଇ ବାସ କରି ଜଗିକି ବସି ରହିବି ନୁହେଁ? ସଫା ସଫା କହିଦେଉଛି, ଶୀଘ୍ର ଆସିବ ନହେଲେ ଘରେ ପୁରେଇ ଦେବିନି।

ମଙ୍ଗଲୁ - (ହସିଲା) ମୂଳରୁ ଘର ନାହିଁ ଇଏ କହୁଛି ଘରେ ପୁରେଇ ଦେବିନାହିଁ। ଯଦି ନିଜର ଖଣ୍ଡେ ଘର ଥାଆନ୍ତା ନିଜେ ମହାରାଣୀ କହି ହୁଅନ୍ତା...(ହସିଲା)

ଗୋଲାବ - ମୁଁ ମହାରାଣୀ ନ ହେଲେ ନାହିଁ। ତୁମେ ପରା ନିଇତି ସଞ୍ଜ ଗଡ଼ିଲେ ନିଜକୁ ନିଜେ ଗଜପତି ହୋଇ ଫେରୁଛ।

ମଙ୍ଗଲୁ - (ହସି) ହଉ ହଉ, ଯାହା କହୁଛୁ କହୁଥା - ସେ ସବୁ ବେକାର କଥା ଶୁଣିବାକୁ ମୋ ପାଖରେ ବେଳ ନାହିଁ। ମୁଁ ଚାଲିଲି। .. (ଗୀତ ଆରମ୍ଭ କରି ଯିବାକୁ ବାହାରିଲା)

ଗୋଲାବ - (ବାଟ ଓଗାଳି ଠିଆହେଲା) ମୋତେ ପଇସା ଦେଇ ଯାଅ ମୁଁ ଚାଉଳ, ସଉଦା କିଣିବି।

ମଙ୍ଗଲୁ - ମୁଁ ନେଇ ଆସିବିନି?

ଗୋଲାବ - ହଁ ହଁ ମୁଁ ସେକଥା ଜାଣିଛି। ମୁଁ କ'ଣ ମନା କରୁଛି? ତୁମର ଫେରିବାକୁ ଡେରି ହେବ ତ, ମୁଁ ସଉଦାଆଣିଲେ ରୋଷେଇ ବସେଇବି। (ମଙ୍ଗଲୁ ପଇସା କାଢ଼ି ଦେଲା)

ମଙ୍ଗଲୁ - ଏଇନେ ୨୦ ଟଙ୍କା

ଗୋଲାବ - ନାନା ଏତିକିରେ ହେବନି ଆହୁରି ଦେ ୫୦ ଟଙ୍କା,

ମଙ୍ଗଲୁ - ୫୦ ଟଙ୍କା ନେଇ କ'ଣ କରିବୁ ? କ'ଣ ଆଜି ଖାସି ମାଂସ କରିବୁ ନା କ'ଣ ? ଏଇନେ ଆଉ ୨୦ ଟଙ୍କା ନେ ଏତିକିରେ ଆଜି ଚଳେଇ ଦେ କାଲିକି ଦେଖିବା। (ଗୀତ... ବଡ଼ଲୋକର ବେଟିଲୋ।.... ପ୍ରସ୍ଥାନ)

ଗୋଲାବ - ଜୀବନଟା ସାରା ଏମିତି କାଲି କାଲି କରି ବିତିଗଲା। ଏ ଜୀବନରେ ଆମର ଆଉ କେବେ ଆଜି ଭଲ ଦିନଟେ ଆସିବ କି ନା କେଜାଣି। (ମଙ୍ଗଲୁ ଚାଲିଗଲା) (କ୍ରମେ ସ୍କୁଲର ପାଠ ଶୁଣାଗଲା ଓ ପାଠ କଠିନରୁ କଠିନ ହୋଇଚାଲିଲା ଗୀତ ଶେଷରେ ନାଚି ନାଚି ଆସିଲା କାଲି। ହାତରେ ଖଣ୍ଡେ ବହି, ଘରେ ପହଞ୍ଚିବା ଆଗରୁ ବହିକୁ ବସ୍ତାନି ଫ୍ରକ୍ ଭିତରେ ପୁରେଇ ରଖିଲା।)

କାଲି - ମାଆ..ମୁଁ ଏବେ ଖାଇବି ନାହିଁ। ରାତି କି ଖାଇବି।

ଗୋଲାବ - ମୁଁ ଜାଣିଥିଲି ତୁ ଖାଇବୁ ନାହିଁ ବୋଲି। ସ୍କୁଲକୁ ଯାଇଥିଲୁ ନୁହେଁ?

କାଲି - ବାପା ଆସିନି ବୋଧହୁଏ..।

ଗୋଲାବ - ସିଏ ଆସୁ ଆସୁ ରାତି ଅଧ ହେବ। ତୁ ଯାଆ ଶୋଇପଡ଼, ସେ ଆସିଲେ ମୁଁ ତତେ ଡାକିଦେବି।

କାଲି - (ମାଆ ପିଠିରେ ଲାଉ ହୋଇ ପଡ଼ିଲା) ମାଆ ଲୋ ମାଆ ! ଜାଣିଲୁ ଗୁରୁମା ଆଜି ମୋତେ ଆଉ ଖଣ୍ଡେ ବହି ଦେଇଛନ୍ତି। ନୂଆ ନୂଆ ଗୀତ ବି' ଶିଖାଇଛନ୍ତି। ଗାଇବି?

ଗୋଲାବ - ଗାଉନୁ ଗାଆ... ହେଲେ ତୋ ବାଆ ଶୁଣିଲେ ଗାଳି କରିବ...।

କାଲି - (ଗୀତ ଗାଇ ନାଚିଲା) ରବି ପରେ ସୋମ ତା ପରେ ମଙ୍ଗଳ ତା ପରେ ଯେ ବୁଧବାର, ଗୁରୁ ଶୁକ୍ର ଶନି ଆସେ ତାହାପରେ ସାତ ବାର ଏ ପ୍ରକାର ... ମାଆ ତୁବି ମୋ ସାଙ୍ଗରେ ଗାଆ। (ଗୀତ)

କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର
ଧନ୍ୟ ମହାପ୍ରଭୁ ମହିମା ତୁମର
ଅଟେ ଅନନ୍ତ ଅପାର...।

(ଗୋଲାବ ଓ କାଲି କୋଳା କୋଳି ହୋଇ ହସିଲେ)

କାଳି - ମାଆ ତୁ ପାଠ ପଢ଼ିବୁ?

ଗୋଲାବ - ଛି, ଛି, ବୁଢ଼ାକାଳେ ପଢ଼ିବି? ଲୋକେ କ'ଣ କହିବେ?

କାଳି - ଲୋକେ କିଏ କାହିଁକି ଜାଣିବ ଯେ.. କହିବ?

ଗୋଲାବ - ତୋ ବାଆ ଜାଣିଲେ ମୋତେ ଜୀବନରୁ ମାରିଦେବ ନି?

କାଳି - ବାପା ଘରକୁ ଫେରୁ ଫେରୁ ତ ଅଧରାତି। ମୁଁ ସ୍କୁଲରୁ ଯାହା ଶିଖି ଆସିବି ତୋତେ ଶିଖାଇଦେବି। ଦୁହେଁ ପାଠ ପଢ଼ିବା ଗୀତ ଗାଇବା ନାଚିବା।

ଗୋଲାବ - ମୁଁ କ'ଣ ପାଠ ପଢ଼ି ପାରିବି? ନ ପାରିଲେ ଲାଜ ଲାଗିବ ନାହିଁ?

କାଳି - ଲାଜ କାହିଁକି ଲାଗିବ? ହେଲେ ଦେଖିବୁ କିଛି ଦିନ ପାଠ ପଢ଼ିଲା ପରେ କେତେ ମଜାଲାଗିବ।

ଗୋଲାବ - କେଜାଣି ମୋତେ ତୋକଥା ଶୁଣି ଡର ଲାଗୁଛି...

କାଳି - କାହିଁକି?

ଗୋଲାବ - କାଳେ କ'ଣ ହୋଇଯିବ?

କାଳି - ହେବ ତ ନିଶ୍ଚୟ। କିନ୍ତୁ କ'ଣ ହେବ, ଆଉ କିମିତି ହେବ, ସେ କଥା ତୁ ନିଜେ ନିଜେ ଅଙ୍ଗେ ନିଭେଇବୁ ଲୋ ମାଆ। ତା ପରେ କହିବୁ ତୋର ଏ ଝିଅ ସତ କହୁଛି ନା ମିଛ।

ଗୋଲାବ - ସତରେ..

କାଳି - ଚାଲ ଆଜିଠୁଁ ପାଠ ପଢ଼ା ଆରମ୍ଭ କରିବା । ମୋ ସାଥିରେ କହ ଅ ଆ ଇ ଈ । (ଗୋଲାବ ପାଳି ଧରିଲା) ଇଟା ଗଢ଼ି ମାଟିରେ, ପୋଡ଼ ତାକୁ ଭାଟିରେ। କଖଗଘ... ଘରକର ତିଆରି, ପାଇଖାନା ସାଥିରେ...। ଚଛଜଝ ...ଝଁ ଝଁ ଝଁ ଡାକିଲା ଝିଙ୍କାରୀ ଉଠ ଚାଷୀଭାଇ ଧାନବୁଣ ଅକ୍ଷୀତୃତୀୟା କୁ ମୁଠିଅନୁକୁଳ ବଇଶାଖ ଖରା ହେଲା ଟାଣ।

ମଙ୍ଗଲୁ - ରାତିରେ ଖରା.. ଦିନରେ ତରା... ପାଣିରେ ବୁଡ଼ିଲା ବୁଟ.... ଏ ଢଗର ଉତ୍ତର କହିବଯିଏ ନିଶ୍ଚେ ହୋଇଥିବ ମୋ ମହୁଲି ସାଙ୍ଗ, ନହେଲେ ପିଇଥିବ ନିଶ୍ଚେ ଭାଙ୍ଗ... ( ମାଆଝିଅ ଦୁହେଁ ଠରା ଠରି ହୋଇ ସାବଧାନ ହୋଇଯିବେ।)

କାଳି - ମୋ ବାପା ଆସିଲାଣି। ବାପା, ବାପା, ମୋ ପାଇଁ କ'ଣ ଆଣିଛ?

ମଙ୍ଗଲୁ - ଆଜି ଦଶ ଦଶ କରି କୋଡ଼ିଏ ନେଇଛୁ। ପୁଣି ଆଣିବି କ'ଣ?

ଗୋଲାବ - ଘରକୁ ପରିବା ପତ୍ର ସଉଦା କ'ଣ କିଛି ଆଣିନ...

ମଙ୍ଗଲୁ - କିରେ ସେସବୁ ତୁ ଆଣିବୁ ବୋଲି ପରା ପଇସା ନେଇଥିଲୁ ? ୨୦/୨୦ କରି ୪୦ ଟଙ୍କା ନେଇଥିଲୁ। କ'ଣ କଲୁ? ସଉଧା ଆଣିଛୁ ନା ନାହିଁ? ନା ପିଇଦେଲୁ ?

ଗୋଲାବ - ଘରକୁ ସଉଦା ନ ଆଣି ମୁଁ କ'ଣ ଆଉ ତୋ ଭଳି ମଦ ଗଞ୍ଜେଇ ଖାଇ ଉଡ଼େଇ ଦେଲି? (ମାଆ ଝିଅ ହସିଲେ)

ମଙ୍ଗଲୁ - ଆଜି କ'ଣ ହୋଇଛି କିରେ? ଦି'ଜଣଙ୍କର କ'ଣ ଭାରି ହସ? କ'ଣ ସାପର ପାଦ ଦେଖିଲ ନା ଘୋଡ଼ାର ଶିଙ୍ଗ ଦେଖିଲ କିରେ? କେଉଁଠୁ ପୋତା ଧନ ମିଳିଗଲାକି?

ଗୋଲାବ - ସାପର ପାଦତ ଏଇନେ ତୋତେ ଦେଖାଯାଉଥିବ, ଏଇନେ ପରା ଗୀତ ଗାଉଥିଲୁ । ରାତିରେଖରା ଦିନରେତରା ତୁମକୁ ଦିଶୁଛି ବୋଲି...। (ପୁଣି ଦୁହେଁ ହସିଲେ)

କାଳି - (ବାପାକୁ ଧରି) ତୁ ବି ହସୁନୁ....ଆମସାଙ୍ଗରେ ହସ... (ମଙ୍ଗଲୁ ମଧ୍ୟ ବୋକାଙ୍କ ପରି ହସିଲା)

ଗୋଲାବ - ଚାଲ ଏଥର ଖାଇବ ଚାଲ...

ମଙ୍ଗଲୁ - ମୋତେ ତ ଭୋକ ନାହିଁ। ଆଜି କ'ଣ ରାନ୍ଧିଛୁ ?

ଗୋଲାବ - ଭାତ ଡାଲି ସାଙ୍ଗରେ ଆଳୁ ପିଆଜ ଭଜା କରିଦେଇଛି।

ମଙ୍ଗଲୁ - ବାଃ ! ଆଳୁକୁ ନ ଶିଝେଇ ଭାଜି ଦେଇଛୁ, ଗୋଟିଏ ନୂଆ ଦରକାରୀ ବନେଇଛୁ । କ'ଣ ତେଲ ପକେଇଛୁ ନା ପାଣି ପକେଇ ଭାଜିଦେଇଛୁ ?

ଗୋଲାବ - ୫୦ ଗ୍ରାମ ତେଲ ଆଣିଥିଲି। ସେଇଥିରୁ ବିଟୋପା ପକେଇ ପିଆଜ ଲଙ୍କା ଦେଇ ଭାଜି ଦେଇଛି ଖାଇବୁ ଯଦି ଚାଲ ନହେଲେ ନାହିଁ।

କାଲି - ମାଆ - ମାଆ କାଲିକି ଡାଲମା କରିବୁ। କେତେଦିନ ହେଲା ଡାଲମା ଖାଇନି...,

ଗୋଲାବ - ହଉ ହଉ ହେଇଟି ଶୁଣୁଛ ? ଆଗକୁ ବର୍ଷା ଦିନ ଆସୁଛି... ଆମର ଏ ଜରିଘର, ଠାଏଁ ଠାଏଁ ଚିରି ଫାଟି ଗଲାଣି। ଆଉ ଖଣ୍ଡେ ବଡ଼ ଜରି ଆଣନ୍ତେ ନାହିଁ। ନହେଲେ ବର୍ଷାଦିନ ସାରା ଦହଗଞ୍ଜ ହେବାକୁ ପଡ଼ିବ।

ମଙ୍ଗଲୁ - ଏତେ ବ୍ୟସ୍ତ କାହିଁକି ହେଉଛୁ ? ଗଲା ସାଲ ଝଡ଼ବର୍ଷା ବେଳେ ସରକାର ଏଇ ଜରିଖଣ୍ଡେ ଦେଇଥିଲେ, ଏଥର ଝଡ଼ବର୍ଷା ହେଲେ ପୁଣି ସରକାର ଦେବେନି। .... ଏତେ ଅଥୟ ହେଲେ ଚଳିବ ?

କାଲି - ବାଆଲୋ ... ସରକାର ଦେବେ ବୋଲି ଆମେ କ'ଣ ହାତ ଗୋଡ଼ ବାନ୍ଧି ବସିରହିବା ? ଆମକୁ ତ ପୁଣି କିଛି ଉପାୟ କରିବାକୁ ହେବନା ନାହିଁ ?

ମଙ୍ଗଲୁ - ଆମେ ବା କ'ଣ କରି ପାରିବା ? ଏତେ ବଡ଼ ଜରି ଖଣ୍ଡେ ଆମେ ପାଇବା କେଉଁଠୁ କହିଲୁ ? ନା ଆମ ପାଖରେ ଏତେ ପଇସା ଅଛି ଯେ ଆମେ ଖଣ୍ଡେ କିଣି ଆଣି ପାରିବା ?

କାଲି - ଗୋଟିଏ ବଡ଼ ଜରି ନହେଲା ନାହିଁ। ଛୋଟ ଛୋଟ ୮/୧୦ଖଣ୍ଡ ଜରି ଯୋଗାଡ଼ କରି କଣା ଫଟା ଯାଗାକୁ ଘୋଡ଼େଇ କରି ଦେଇ ପାରିବା ତ ?

ଗୋଲାବ - ଝିଅ ଠିକ୍ କଥା କହିଛି। ମୋ ଝିଅର ବୁଦ୍ଧି କେତେ ଦେଖୁଛ ?... ପରେ ଯେତେବେଳେ ସରକାର ଦେବେ ଦେଖାଯିବ.. ସେତେ ଦିନ ଯାକେ ତ ଆଉ ବର୍ଷା ପାଣିରେ ହସ୍ତ ସନ୍ତ ହେବାକୁ ପଡ଼ିବ ନାହିଁ।

ମଙ୍ଗଲୁ - ଠିକ୍ ଅଛି - ଦେଖିବା .... ଏବେ ଚାଲ ଖାଇପିଇ ଶୋଇବା.. ସକାଳେ ପୁଣି..

କାଲି - ବାଉଁଶ ରାଣୀଖେଳ.. ବାଆ ...କାଲି ଦି'ବେଳା ଖେଳ ହେବ.. ଜାଣିଥା...

ମଙ୍ଗଲୁ - ଦେଖିଲଟି ମୋ ଝିଅର ବୁଦ୍ଧି ଫେରିଲାଣି ବୋଧହୁଏ। ଦିବେଳା କାହିଁକି ? କାଲି କ'ଣ କି ?

କାଲି - କାଲିପରା ରବିବାର, - ସ୍କୁଲ ଛୁଟି..(କଥା ଟାତ' ପାଟିରୁ ବାହାରି ଗଲା ସେ ଜିଭ କାମୁଡ଼ି ପକାଇଲା)

ମଙ୍ଗଲୁ - ସ୍କୁଲ ଛୁଟି ହେଲେ କ'ଣ ଭଲ ବେପାର ହେବନା କ'ଣ ? ସ୍କୁଲ ଛୁଟି ସାଙ୍ଗରେ ତୋର ମତଲବ କ'ଣ ?

ଗୋଲାବ - (କଥା ବୁଲେଇ ଦେଲା) ଅଫିସ ବି ସବୁ ଛୁଟିନା.. ଲୋକେ ସବୁ ବୁଲାବୁଲି କରିବାକୁ ବାହାରିବେ। ତେଣୁ ରାସ୍ତାଘାଟ ଭିଡ଼ ହେବ ଆଉ ଦିପଇସା ଅଧିକା ମିଳିବ.. ସେଇଆ ନା ଲୋ ଝିଅ ? ତୁ ସେଇ କଥା କହୁଥିଲୁ ତ ?

କାଲି - ଦେଖ.. ମୋ ମାଆର କେତେ ବୁଦ୍ଧି - ସେ ବୁଝିଗଲା ଆଉ ତୁ ବୁଝି ପାରିଲୁ ନାହିଁ। ଚାଲ ଚାଲ ଖାଇବା ଭାରି ଭୋକ - (ମଙ୍ଗଲୁ ଭିତର କୁ ଗଲା / ମାଆ ଝିଅ ହସି ଉଠିଲେ)

## ୬ଷ୍ଠ ଦୃଶ୍ୟ

(ଦେଖାଗଲା ବର୍ଷା ହେଉଛି । କାଳି ଗୀତ ଗାଇ ନାଚୁଛି)

ଗୀତ - ମେଘ ବରଷିଲା ଟପର ଟପର କେଶୁର ମାଇଲା ଗଜା, ବିଲବାଡ଼ି ଏବେ ହସି ଉଠିବରେ ତେଲିଙ୍ଗି ବାଇଦ ବଜା ।

(ଗୀତର ମଝିରେ କାଳିର Dress ବଦଳିଯାଉଛି ଏବଂ ଗୀତର ସ୍ୱରରେ ବୟସ ବଢ଼ିବାର ଛାପ ରହିବ)

ଗୀତ - ମେଘ ବରଷିଲା ଟୁପୁରୁ ଟାପୁରୁ କେଶୁର ମାଇଲାଗଜା କେଉଁ ରାଇଜରେ ରହିଲେ ମୋ ରଜା ତେଲିଙ୍ଗି ବାଇଦ ବଜା.... ।

ଗୀତ - ବରଷାରେ ଭିଜୁଛି ଏମାଟି..ବରଷାରେ ଭିଜିଯାଏ ଦେହ । ମାଟିର ଗନ୍ଧରେ ମନ ମାତିଯାଏ... ତାତି ରେ ମୋ ଭରିଯାଏ ଦେହ..

ଗୀତ - ଛମ ଛମ ଛମ ଛମ ନାଚେ ବରଷା

ଭିଜାଇ ଫୁଲ ର କଳି... ଗୀତ- ମେଘ ବରଷିଲା ଟୁପୁରୁ ଟୁପୁର କେଶର ମାଇଲା ଗଜା କେଉଁ ରାଇଜେ ରହିଲେ ମୋ ରଜା ତେଲିଙ୍ଗି ବାଇଦ ବଜା..... ।

କାଲି ମୁଁ ଫୁଟିବି ନୂଆ ରଙ୍ଗରେ

ସୁବାସ ଯିବ ମୋ ଖେଳି ....

(ବିଭିନ୍ନ ଗୀତର ପଦଭିତରେ ସ୍ୱର ସଂଯୋଜନା ପୋଷାକ ତଥା କାଳିର ନୃତ୍ୟ ତଥା Body Language ଭିତରେ ଦେଖାଯିବ ଯେ କାଳିର For Example - ପ୍ରଥମ ଗୀତରେ ସେ ସ୍କୁଲ ଡ୍ରେସ ପିନ୍ଧିନାଚିବ । ୨ୟ ଗୀତରେ ଘରର ଲମ୍ବା ଫ୍ରକ୍ ପିନ୍ଧି ନାଚିବ। ୩ୟ ଗୀତରେ ସାଲୁଆର ପଞ୍ଜାବୀ ବା ସେମିତି କିଛି ଡ୍ରେସ୍ , ୪ର୍ଥ ଗୀତରେ ତା ଦେହରେ ଗୁଡ଼େଇ ହୋଇଯିବ ଗୋଟିଏ ହଳଦିଆ ରଙ୍ଗର ଭଉଣୀ କିମ୍ବା ଶାଢ଼ି..., ନିର୍ଦ୍ଦେଶକ ଅନ୍ୟ ପନ୍ଥାମଧ ଗ୍ରହଣ କରି ପାରନ୍ତି।) ( ଏଇ ସବୁ ଦୃଶ୍ୟ ତା' ମାଆ ଦୂରେ ଥାଇ ଝିଅର ଗତି ବିଧିକୁ ଲକ୍ଷ୍ୟ କରୁଛି। କାଳିର ଆଖି ତା' ମାଆ ଉପରେ ପଡ଼ିବା ମାତ୍ରେ କାଳି ଲାଜରେ ଘର ଭିତରକୁ ଧାଇଁ ପଳେଇ ଯାଇଛି ତା' ପଛେ ପଛେ ତା' ମାଆର ପ୍ରସ୍ଥାନ ବାହାରୁ ପ୍ରବେଶ କରିଛି ମଙ୍ଗଲୁ)

ମଙ୍ଗଲୁ - 'ଓ ହୋ'କି ବର୍ଷା... ବୋଧହୁଏ ବର୍ଷା ଋତୁ ଆରମ୍ଭ ହୋଇ ଗଲା ..କି କ'ଣ ? ଆଜି ଆଉ ବାଉଁଶ ରାଣୀ ଖେଳିହେବନି।

ଗୋଲାବ - (ପ୍ରବେଶ) ଝିଅ ଆଉ ବାଉଁଶ ରାଣୀ ଖେଳିବ ନାହିଁ। କେବେବି ଖେଳିବ ନାହିଁ।

ମଙ୍ଗଲୁ - କାହିଁକି ? ସେ କ'ଣ ମନାକଲା ? ତା'କଥା ଅନୁସାରେ ସେ ତ ପ୍ରତିଖେଳ କୁ ଦଶଟଙ୍କା ନଉଛି।

ଗୋଲାବ୍ - ସେ ଆଉ ପଇସା ମାଗିବ ନାହିଁ।

ମଙ୍ଗଲୁ - ହେଲେ କାହିଁକି ? କ'ଣ ହୋଇଛି ତା'ର ଖୋଲିକହୁନୁ।

ଗୋଲାବ - ଆଜିଠାରୁ ସେ ଶାଢ଼ି ପିନ୍ଧିଲାଣି। (ମଙ୍ଗଲୁ ଗୋଲାବ ଦୁହେଁ ଦୁହିଙ୍କ ମୁହଁକୁ ଚାହିଁଲେ । ) ସେ ଆଉ ବାଉଁଶ ଉପରେ ଚଢ଼ିବ ନାହିଁ କି ବାଉଁଶ ରାଣୀ ହେବନାହିଁ। (ଯେମିତି ତା ମୁଣ୍ଡରେ ଆକାଶ ଭାଙ୍ଗି ପଡ଼ିଲା। ସେ ନଥ କରି ବସିପଡ଼ିଛି)

ଗୋଲାବ - ଏବେ ଘର ଚଳିବ କେମିତି ସେଇ କଥା। ବସି ଭାବ। ମୁଣ୍ଡରେ ହାତ ଦେଇ ଥକ୍କା ମାରିଲେ ଚଳିବ ନାହିଁ।

ମଙ୍ଗୁଲ - ହେ ଭଗବାନ୍ ! ମୋତେ ତ ଏ ସଂସାର ପୂରା ଅନ୍ଧାର ଦେଖାଯାଉଛି।

**(ଅନ୍ଧାର)**

## ୭ମ ଦୃଶ୍ୟ

*(ମଦଭାଟିରେ ମଙ୍ଗଲୁ ବସିଛି)*

ମଙ୍ଗଲୁ - ହେ ଆନ୍ନା ସରକାର.. ସେତେବେଳୁ ମାଗି ହେଉଛି .. ଋଉଳ କି ମହୁଲି ଗିଲାସେ ଦେ.. ମୋ ଦେହ ଥରିବାକୁ ଆରମ୍ଭ କଲାଣି ପରା ନହେଲେ ମୁଁ ଏଇଠି ପଡ଼ିମରି ଯିବିକାଣିଥା..।

ଆନ୍ନା - ଦେଖ ମଙ୍ଗଲୁ... ଆଜ କୁ କେତେଦିନ ହେଲା ତୁ ପଇସା ଆଣୁନୁ। ଧାରରେ ମଦ ପିଇ ଋଲିଛୁ। କେତେ ଦିନ ଆଉ ମୁଁ ତୋତେ ଧାର ଦେଇ ପାରିବି କହ। ଆରେ ମୁଁ ବି ବେପାର କରୁଛି । ମଦ ତ ମୋ ବାଡ଼ିର ଶାଗ ନୁହେଁ ନା ଆଜି ତୋଳି ଆଣିଲେ କାଲି ପୁଣି କଅଁଳି ଯବ।

ମଙ୍ଗଲୁ - ହେ ଭାଇ ତୋ ଗୋଡ଼ ଧରୁଛି ଗୋଟିଏ ଗ୍ଲାସ ଦେ । ନହେଲେ ଜୀବନଟା ଛାଡ଼ିଯିବ ରେ ଭାଇ...।

ଆନ୍ନା - ଠିକ୍ ଅଛି ଆଜି ଦିନକ ଦେଉଛି ହେଲେ କାଲି ଠାରୁ ପଇସା ନ ଆଣିଲେ ଏଠିକି ଆସିବୁ ନାହିଁ।

ମଙ୍ଗଲୁ - ହଉ ହଉ ଆଜି ଦିନକ ଯାଉ, କାଲିକି ଦେଖିବା ...

ଆନ୍ନା - କିରେ ବାଉଁଶ ରାଣୀରୁ ଆଉରୋଜଗାର ହେଉନାହିଁ କି ?

ମଙ୍ଗଲୁ - କ'ଣ କରିବି କହ କେତେ ଦିନ ହେଲା ରୋଜଗାରବନ୍ଦ ଝିଅ ବାଉଁଶ ରାଣୀ ଖେଳିବାକୁ ଯାଉନି..

ଆନ୍ନା - କାହିଁକି ତା' ଦେହ ଖରାପ ନା କ'ଣ ?

ମଙ୍ଗଲୁ - ନାଇଁ ନାଇଁ ମୋ ଭାଗ୍ୟ ଖରାପ..।

ଆନ୍ନା - କ'ଣ ହୋଇଛି କହୁନୁ..

ମଙ୍ଗଲୁ - କେତେ ଦିନ ହେଲା ଝିଅ ଶାଢ଼ି ପିନ୍ଧୁଛିରେ ଆନ୍ନା। ସେ ଆଉ ବାଉଁଶ ଉପରେ ଚଢ଼ିବ ନାହିଁ କି ବାଉଁଶ ରାଣୀ ଖେଳିବ ନାହିଁ।

ଆନ୍ନା - (ହସି) ଆରେ କି କଥା କହୁଛୁ । ଝିଅ ପିଲାଟା ଶାଢୀ ନପିନ୍ଧି କ'ଣ ଲୁଙ୍ଗି ପିନ୍ଧିବ। ଆରେ ଏଇଟା ତ ଖୁସିର ଖବର। ସେତେବେଳୁ ସେ କଥା କହୁନୁ । ନେ ନେ ଏଇ ଖୁସିରେ ଗିଲାସେ ମାଲମାରିଦେ । ଏଇଟା ବହୁତ ଖୁସିର ଖବରରେ ଏଥର ତୁମେ ଦି'ଜଣ ସ୍ୱାମୀ ସ୍ତ୍ରୀ ମୂଲିଆ କାମ କରୁନ...।

ମଙ୍ଗଲୁ - ମୂଲିଆ କାମର ଖଟଣି ଖଟିବାକୁ ଆମର କ'ଣ ବଳ ବୟସ ଆଉ ଅଛି।

ଆନ୍ନା - ତା'ହେଲେ ତୁ କାହା ଘରେ ଛୋଟ ମୋଟ କାମ କରୁନୁ। ତୋ ସ୍ତ୍ରୀ ତ ଋହିଁଲେ ଲୋକଙ୍କ ଘରେ ଝାଡୁ ପୋଛା କରିପାରନ୍ତା। ତାକୁ କହୁନୁ ସେ ବି କାମ ପାଇଟି କରି ଦି ପଇସା ରୋଜଗାର କରିପାରନ୍ତା।

ମଙ୍ଗଲୁ - ହେ ଆନ୍ନା ଖବରଦାର। କ'ଣ କହିଲୁ, କାହାଘରକୁ ମୁଁ ତାକୁ କାମ କରିବାକୁ ପଠେଇବି ? ନାଇଁ ନାଇଁ ସେ କଥା ହବନି। ମୋ ମାନ ମହତ ରହିବ ଟି ?

ଆନ୍ନା - ହଁ..ନା... ମାନ ମହତ ରହିବ କେମିତି ତୁ ତ ମନେମନେ ବାଦଶାହା ଟାଏ ତ ! ମାଗି ଖାଉଛୁ ଲାଜ ଲାଗୁନି, ମାନ ମହତ ଯାଉନି। ଖଟି ଖାଇଲେ ଯାର ମାନହମତ ପଳେଇଯାଉଛି।

ମଙ୍ଗଲୁ - ନାଇଁ ନାଇଁ ସେ କଥା ନୁହଁ ଯେ ..ଆଜି ଯାକେ ବାହାରେ କାହାଘରେ ସେ କାମଦାମ କରିନି ତ..।

ଆନ୍ନା - ତୁ ଯଦି ଋହିଁବୁ, ମୁଁ ତୁମ ତିନି ଜଣକ ଙ୍କ ପାଇଁ କାମ ଠିକ୍ କରିଦେଇ ପାରିବି। ବେଶୀ ଭିଡ଼ କାମ ନୁହେଁ, ବସିବା ଉଠିବା କାମ। ତେଣିକି ତୋର ଚିନ୍ତା ଯିବ ଆଉ ନିତି ସଞ୍ଜକୁ ତୁ ଋଉଳି ମହୁଲି ଯେତେ ପିଇବୁ ସବୁ ମାଗଣା ମିଳିବ -

ମଙ୍ଗଲୁ - (ସେତେବେଳକୁ ନିଶା ଧରିଲାଣି) ସତରେ ସରକାର ! ସତ କହୁଛୁ ତ ? ହେଲେ ମୋତେ କାମ ଦେବ କିଏ ?

ଆନ୍ନା - କାମ ନୁହେଁରେ ..ଚାକିରି କହ ଚାକିରି.. ତୁମେ ତିନି ଜଣ ଏଣିକି ଚାକିରି କରିବା। ନେ ଆଉ ଗିଲାସେ ମାରିଦେ.... (ଆଉ ଗ୍ଲାସେ ଦେଲା)

ମଙ୍ଗଲୁ - କ'ଣ କହୁଛ ଭାଇ... ଆମେ ତ କେହି ପାଠ ଶାଠ ପଢ଼ିନୁ କି ଚାକିରି କରିବା ?

ଆନ୍ନା - ଦେଖୁଛୁ ତ ମୁଁ ଦୋକାନରେ ଏକା ଏକା କେତେ ହଇରାଣ ହେଉଛି। ଦୋକାନର ପଇସାବାକ୍ସ ସମ୍ଭାଳିବି ନା, ମାଲ ଯୋଗେଇବି ନା ଖଖଣା ବନେଇବି.. ମୋତେ ଦିଜଣ ଲୋକ ଦରକାର।

ମଙ୍ଗଲୁ - କାହିଁକି - ତୁଇଁ ଆଉ ସେ ମାଉସୀ ବୁଢ଼ୀ କୁଆଡେ ଗଲେ କି ?

ଆନ୍ନା - ତା କଥା ଆଉ କାହିଁକି କହୁଛୁ। ରଜ ବେଳଠୁ ଗାଁକୁ ଯାଇଛି ଯେ ତା ଦେଖା ସାକ୍ଷାତ ନାହିଁ। ଆଉ ମାଉସୀ ବୁଢ଼ୀ କଥା କହନା... ବୟସ ହେଲାଣି ଖଖଣା ବନେଇ ପାରୁନି, ବେମାର ବାହାରି ପଡୁଛି। ତେଣୁ ମୁଁ କ'ଣ କହୁଥିଲି କି ତୁମେ ଦି'ଜଣ ସ୍ୱାମୀ ସ୍ତ୍ରୀ ସେ ଜରିଘର ଛାଡ଼ି ଆସି ଏଇଠି ରହନ୍ତ - ଖପର ଛପର ଘର, ବର୍ଷା ପାଣିର ଡର ନାହିଁ। ଏଇଠି ଖାଇବ, ପିଇବ, ଅୟସ କରିବ, କେହି କହିବାକୁ ନାହିଁକି ଦେଖିବାକୁ ନାହିଁ ନିଜଘର ଭଳିଆ ଚଳିବ। ଖାଇବା ପିଇବା ମାଗଣା। ତା'ଛଡ଼ା ନିତି ଦୋକାନ ବନ୍ଦ କଲା ବେଳକୁ ଯେତେ ଇଚ୍ଛା ମାଲ ପିଇ ତୁ ଆରାମରେ ଶୋଇବୁ।

ମଙ୍ଗଲୁ - ପଇସା ପତ୍ର କିଛି ଦେବୁ ନା ଖାଲି ଖାନା ପିନା ଦରମା ବିନା..

ଆନ୍ନା - ଦେବିନା .. ଦି'ଜଣକୁ ଖାଇବା ପିଇବା ଦେବି। ଲୁଗାପଟା ବି ଦେବି । ପୁଣି ମାସକୁ ହାତ ଖର୍ଚ୍ଚ ହଜାରେ ହଜାରେ ଦି'ହଜାର ଟଙ୍କା। କ'ଣ ରାଜି ଯଦି କହ... କାଲିଠୁ କାମ ଆରମ୍ଭ କରିବୁ।

ମଙ୍ଗଲୁ - କ'ଣ କହିଲୁ ହଜାରେ ହଜାରେ ଦି ହଜାର ନଗଦ ଦରମା....ମନ୍ଦ କ'ଣ.. ମୁଁ ରାଜିଯେ ହେଲେ ଆମେ ଦି'ଜଣ ସିନା ଏଇଠି ରହିବୁ। ଆଉ ଆମ ଝିଅଟା ସେ ପୁଣି କେଉଁଠି ରହିବ ?

ଆନ୍ନା - ରହ ରହ ତା କଥା ମୁଁ ବୁଝୁଛି। (Phone କରି) ଆଜ୍ଞା ମିଳିଛି...... Final କରିବି ତ ? ହଉ ହଉ ମୁଁ ତା ସାଙ୍ଗରେ କଥା ହେଉଛି (ଫୋନ୍ କାଟିଲା) ତା' କଥା ତୁ ଚିନ୍ତା କରନା.. ସେ କଥା ମୁଁ Final କରିଦେଲି। ସିଏ କ'ଣ ଏଇଠି ରହିବ ? ଏଠି ରହିବ ନାହିଁ ରେ -- ତା ପାଇଁ ଜଣେ ସାହେବଙ୍କ ଘର ଠିକ୍ କରିଦେବି। ସିଏ ସେଇଠି ରହିବ। ଖାଇବ, ପିଇବ, ନାଚିବ, ଗାଇବ, ମଉଜ ମଜଲିସ୍ କରିବ ଆଉ ମାସ ଶେଷକୁ ୩/୪ ହଜାର ଟଙ୍କା ସେ ଏକା କମେଇବ ରେ... ତା'ପରେ ତୁ ତ ରାଜା, ମହାରାଜା ଭଳି ଚଳିବୁ। ବୁଝିଲୁ।

ମଙ୍ଗଲୁ - ତୁ ଠିକ୍ କହୁଛୁ ତ ? ମୁଁ ଟିକିଏ ଘରେ ବୁଝିଆସେ। ତା'ପରେ ତୋତେ କହିବି।

ଆନ୍ନା - ଆରେ ତୁ ବୁଝିବୁ କ'ଣ - ତୋ ଘରର ମାମଲତ କାର କିଏ ? ତୁ ନା ନାହିଁ। ମୋ ଘରେ ସେଇ ଗୋଟିଏ ନିୟମ ... ମୁଁ ଯାହା କହବି ସମସ୍ତେ ମାନିବାକୁ ବାଧ୍ୟ। କିରେ ହାତୀ କାଦାନ୍ତ ମରଦ କା ବାତ୍"। ନା କ'ଣ କହୁନୁ ? ତୋ କଥାଉପରେ ତୋ ସ୍ତ୍ରୀ କହିବାକୁ କିଏ ? ତାକୁ ତୁ ବାହା ହୋଇଥିଲୁ ନା ସିଏ ତୋତେ ବାହା ହୋଇଥିଲା ବେ ! ନା କହୁନୁ ?

ମଙ୍ଗଲୁ - ତୁ ଠିକ୍ କଥା। କହିଛୁ ରେ ଭାଇ। ମୁଁ ଯାଉଛି ଏକଥା ଗୋଲାବ କୁ ଜଣେଇ ଦିଏ।

ଆନ୍ନା - ହଁ ଶୁଣ ! କାଲି ସକାଳେ ଜଣେ ବାବୁ ମୋ ସାଙ୍ଗରେ ତୋ ଝିଅକୁ ଦେଖିବାକୁ ତୋ ଘରକୁ ଯିବେ। ତାଙ୍କର ଯଦି ପସନ୍ଦ ହୋଇ ଗଲାନା ତା'ହେଲେ ତୁ ତୁ ଏକାଥରେ ମାଲା ମାଲ ହୋଇଗଲୁ ବୋଲି ଜାଣ।

ମଙ୍ଗଲୁ - ଝିଅକୁ ଦେଖିବାକୁ ଯିବେ? କ'ଣ ଚାକରାଣୀ ଦେଖିବେ ନା କନିଆଁ ଦେଖିବେ? କ'ଣ ଯେ ତୁ କହୁଛୁ ମୁଁ କିଛି ବୁଝି ପାରୁନି?

ଆନା - ଆରେ ଚାକରାଣୀ ହେଲେ ବି', ମାଲିକର ପୁଣି ପସନ୍ଦ ହେବା ଦରକାର ନା ନାହିଁ? ତା'ଛଡ଼ା ତୋ ଝିଅ ଏବେବି ନାବାଳକ ଅଛି। ତାକୁ ଚାକରାଣୀ କରି ଘରେ ରଖିବା ଭାରି ବିପଦ। ସରକାର ଧରିଲେ ସିଧାନେଇ ଜେଲରେ ଠୁଙ୍କିଦେବେ ବୁଝିଲୁ। ବେଲ ବି ମିଳିବ ନାହିଁ ରେ ବାପା! ସେ ଆଇନ କାନୁନ କଥା ତୋ ମୁଣ୍ଡରେ ପଶିବ ନାହିଁ। ସେ କଥା ମୁଁ ବୁଝିବି। ହେଲେ ଶୁଣ। ଏ କଥା ଆଉ କାହାକୁ କହିବୁ ନାହିଁ। ମାଲିକର ଯଦି ତୋ ଝିଅ ପସନ୍ଦ ହୋଇ ଯାଏ ନା ମାସକୁ ଦରମା ୪/୫ ହଜାର ବି ଦେଇ ପାରନ୍ତି।

ମଙ୍ଗଲୁ - ସତେ ନା କ'ଣ? ମୁଁ ଆଉ କାହାକୁ କହିବି କାହିଁକି? ଆମର ତ ମାସକୁ ମାସ ପଇସା ପାଇଲେ ହେଲା।

ଆନ୍ନା - ଠିକ୍ କଥା..। ତୁ ଠିକ୍ ବୁଝିଛୁ। ନେ- ଆଉ ଗିଲାସେ ପିଇଦେ ଏଇଟା ସ୍ପେସାଲ ମହୁଲି।

ମଙ୍ଗଲୁ - (ପିଇଲା) ହଁ। ବାଃ...ଇଆର ଟେଷ୍ଟଟା ତ କ'ଣ ନୂଆ ନୂଆ ଲାଗୁଛି।

ଆନ୍ନା - ମହୁଲି ସାଙ୍ଗରେ ବିଦେଶୀ ମାଲକୁ ପଞ୍ଚ କରି ଦେଇଛି। ମାନେ ଫେଣ୍ଟାଫେଣ୍ଟି କରି ବନେଇ ଦେଇଛି। ଯାର ସ୍ୱାଦ ଯେମିତି ନିଆରା ନିଶା ସେମିତି ପ୍ୟାରା...ଯାକୁ ପିଇଲେ ଆକାଶ ଟା ଖାଲି ଗୋଲାପି ଗୋଲାପି ଦିଶିବ।

ମଙ୍ଗଲୁ - (ଆକାଶ ଆଡ଼କୁ ଚାହିଁଲା) କାହିଁ ନା ତ, ଆକାଶଟା ସେମିତି ଅନ୍ଧାରୁଆ ଲାଗୁଛି।

ଆନ୍ନା - ଏବେ ସିନା ଲାଗୁଛି। ହେଲେ ଘରେ ପହଞ୍ଚିଲା ବେଳକୁ ଆକାଶ ତ ଆକାଶ ତା ସାଙ୍ଗକୁ ତୋ ଘରଣୀର ମୁହଁ ବି। ଗୋଲାପି, ଗୋଲାପି ଲାଗିବ ରେ ମଙ୍ଗଲୁ..।

ମଙ୍ଗଲୁ - (ହସିଲା) (ଗୀତ ଗାଇ ଗାଇ ଚାଲିଲା ଦୃଶ୍ୟ ବଦଳିଗଲା)

ଗୀତ - ଗୋଲାପି ଗୋଲାପି ଦିଶୁଛି ମୋତେ ରେ
ଜରିବସ୍ତିର ଏ ଆକାଶ ...
ଗୋଲାପି ଗୋଲାପି ଦିଶୁଛି ଆଉ ଏ
ମୁରମ ରାସ୍ତାର ଆକାର...

(ଘରେ ପହଞ୍ଚି) ଆରେ ଗୋଲାବ.. ଶୁଭୁଛି ନା ନାହିଁ, କୁଆଡେ ଗଲୁ?

ଗୋଲାବ - କ'ଣ ହେଲା ଏତେ ବଡ଼ ପାଟିରେ ହାଉଳି ଖାଉଛୁ କାହିଁକି? (ଆସି) କ'ଣ ଏମିତି କୋଟି ନିଧି ପାଇଗଲୁ ଶୁଣେ।

ମଙ୍ଗଲୁ - ପାଇଛି ଲୋ ପାଇଛି। ଆସିଲୁ ଆସ।

ଗୋଲାବ - କ'ଣ ହେଲା?

ମଙ୍ଗଲୁ - ଏ ଇଆଡେ ଟିକେ ଦେଖତ.....ତୋ ମୁହଁଟା ଟିକିଏ ଭଲ କରି ଦେଖେ,

ଗୋଲାବ - ଛି ... ଛି.. କି ଲାଜ କଥା। ଘର ଭିତରେ ଝିଅ ଅଛି ଶୁଣିବ। କ'ଣ ଭାବିବ କହିଲୁ?

ମଙ୍ଗଲୁ - ଶୁଣୁ...। କିରେ ମୋ ସ୍ତ୍ରୀ ମୁହଁ ମୁଁ ଦେଖିବି, ଏଥିରେ କିଏ କ'ଣ ଭାବିବ କାହିଁକି?

ଗୋଲାବ - କାହିଁକି ମୋ ମୁହଁ କେବେ ଆଗରୁ ଦେଖିନ କି?

ମଙ୍ଗଲୁ - ଦେଖିଛି - ଦେଖିଛି - ହେଲେ ଆଜି ଦେଖିବି ମୋ ଗୋଲାବର ଥୋବଡାଟା ଗୋଲାପି ଗୋଲାପି ଦିଶୁଛି ନା ନାହିଁ?

ଗୋଲାବ - ଛି ଛି ଛି - ମରିଯାଉଥାଏ ଲୋ ମାଆ - କେତେ ଛୋପରା ହେଉଛୁ ବା? କ'ଣ ହୋଇଛି କହୁନୁ? ଆଜି କ'ଣ ଭାରି ଖୁସି?

ମଙ୍ଗଲୁ - ଖୁସିରେ ଜୀବନ ବଂଚିବାର ରାହା ପାଇଯାଇଛି। ଏଥର ଆମର ଦୁଃଖଗଲା। ଆଉ ଏ ଜରିଘର ପାଇଁ ଜରି ଖୋଜିବାକୁ ପଡ଼ିବନି କି ଏ ଜରି ଘରେ ରହିବା ଦରକାର ନାହିଁ।

ଗୋଲାବ - ଆଚ୍ଛା ଆଚ୍ଛା ଏମିତି କ'ଣ ହେଲାକି ? ତୋର କ'ଣ ଲଟରୀ ଲାଗିଗଲା। ନା ବିଜୁପକ୍କାଘର କି ଇନ୍ଦିରା ଆବାସ ଘରରୁ ଘଣ୍ଟେ ମିଳିଗଲାକି ? କହିଲୁ କହିଲୁ ମୁଁ ଟିକେ ଶୁଣେ।

ମଙ୍ଗଲୁ - ଆମକୁ ଚାକିରି ମିଳିଗଲା। ନିତି ନିତି ଆଉ ପଇସା ପାଇଁ ହସ୍ତ ସନ୍ତ ହେବାକୁ ପଡ଼ିବ ନାହିଁ । କି ନିତି ନିତି କାଲିକୁ ବାଉଁଶ ରାଣୀ ହେବାକୁ ଖୋସାମତ କରିବାକୁ ହେବନାହିଁ।

ଗୋଲାବ - (ହସି) ଆଚ୍ଛା ! କେଉଁଠି ତୋତେ ଚାକିରି ମିଳିଗଲା କହିବୁଟି ? ସରକାରୀ ଅଫିସରେ ନା ରାସ୍ତା କଡ଼ରେ ଠେଲାଗାଡ଼ି ଚାକିରି ? କହିଲୁ ଦେଖି ମୁଁ ଶୁଣେ... ହେଇଟି ନିଶାକଟିଲାଣି ନା ନାହିଁ। ନହେଲେ ବାଲ୍‌ଟିରେ ପାଣି ଆଣି ମୁଣ୍ଡରେ ଢ଼ାଳିଦେବି କି ?

ମଙ୍ଗଲୁ - ଆବେ ଚୁପ୍... ମୋର ପୂରା ହୋସ ଅଛି। ମଦଭାଟି ଦୋକାନୀ ସାଆନ୍ତ.. ତାଙ୍କ ଦୋକାନରେ ଆମ ଦି ଜଣଙ୍କୁ ଚାକିରି ଦେଇଛନ୍ତି। (ମାଆ ଝିଅ ପରସ୍ପରକୁ ଚାହିଁଛନ୍ତି।)ମୋତେ ଦେଖୁଛୁ କ'ଣ ? ତୁ ତାଙ୍କ ଦୋକାନରେ ଚଖଣା ତିଆରି କରିବୁ ଆଉ ବାସନ ମାଜିବୁ। ମୁଁ ପୂରା ଫାଇନାଲ କରିଦେଇ ଆସିଲି..।

ଗୋଲାବ - ଆଉ ତୁ କ'ଣ କରିବୁ ?

ମଙ୍ଗଲୁ - ମୁଁ ଗରାଖମାନଙ୍କୁ ମାଲ ଆଉ ଚଖଣା ଯୋଗେଇ ଦେବି।

କାଳି - ମୁଁ କ'ଣ କରିବି ସେ କଥା କହିଲୁ ନାହିଁ ତ ?

ଗୋଲାବ - ତୁ ଗୀତ ଗାଇ ସେମାନଙ୍କ ଆଗରେ ଥେଇ ଥେଇ ହୋଇ ନାଚିବୁ, ଆଉ କ'ଣ ?

ମଙ୍ଗଲୁ - ତୁମ ପାଇପିଙ୍କ ଗୁଣ ପରା ଏଇଆ, କିଛି କଥାରେ ପରତେ ନାହିଁ। ମୋତେ ଇଲେଇତି କରୁଛୁ ନୁହେଁ ? ତୁ ମୋ ଝିଅକୁ କ'ଣ ବୋଲି ଭାବିଛୁ କି ? ସେ ମୋ ଝିଅଟି ! ସେ କ'ଣ ମଦଭାଟିରେ ଚାକିରି କରିବ ? ମୋର ଇଜ୍ଜତ ରହିବ ଟି ? ତା'ପାଇଁ ମୁଁ ଜଣେ ବଡ଼ ବାବୁଙ୍କ ଘର ଠିକ୍ କରିଛି। ସେଇଠି ରହି ସେ ତାଙ୍କର ପିଲା ଛୁଆଙ୍କ କଥା ବୁଝାସୁଝା କରିବ। ହେଲା...।

କାଳି - ନା ନା.. ମୁଁ ପାଠ ପଢ଼ିବି।

ମଙ୍ଗଲୁ - ଆଗେ ଖାଇପିଇ ବଂଚିଲେ ତ ପାଠ ପଢ଼ିବୁ। ପାଠ ପଢ଼ିବାର ଇଚ୍ଛା ଥିଲେ ସେଇଠି ତାଙ୍କ ଘରେ କାମଦାମ କରି କ'ଣ ପାଠପଢ଼ି ପାରିବୁ ନାହିଁ ?

ଗୋଲାବ - ସେ ଯଦି ପଢ଼ିବ କହୁଛି ପଢୁ। ଆମେ ଦି'ଜଣ ତ ଚାକିରି କରିବା ବୋଲି କହୁଛୁ। ଆମେଦି'ଜଣ ମିଶି କ'ଣ ତାକୁ ପଢ଼େଇ ପାରିବା ନାହିଁ ?

ମଙ୍ଗଲୁ - ସେ ପାଠ ପଢ଼ି କ'ଣ ହାକିମ ହେବ ? ସେ ପାଠ ପଢ଼ାଭୂତ ତୋ ମୁଣ୍ଡରେ ବି ପଶିଲାଣି ଦେଖୁଛି। ତୋତେ ଆଉ ଚାକରାଣୀ ହେବାକୁ ମନଲାଗିବ କୁଆଡୁ ? ମନେ ମନେ ତୋତେ ହାକିମାଣୀ ହେବାକୁ ମନ ହେଲାଣି ଦେଖୁଛି। ଏଘରର ମୁରବି କିଏ ? ତୁ ନା ମୁଁ ? .. ତୁ ଆଉ ମାମଲତି କରନା। ମୁଁ ଯାହା କହିବି ସେଇଆ ହେବ। କାଲି ସେ ବାବୁ ସକାଳୁ ସକାଳୁ କାଳି କୁ ଦେଖିବାକୁ ଆସିବେ .... ପସନ୍ଦ ହେଲେ ତାକୁ ସାଙ୍ଗରେ ନେଇଯିବେ। ଆମେ ଯାହା ପଇସା ମାଗିବା ସେ ଦେବେ... ମାସକୁ ୫/୬ ହଜାର ଟଙ୍କା ବି, ଦେଇପାରନ୍ତି। ବୁଝିଲୁ।

ଗୋଲାବ - କିନ୍ତୁ...

ମଙ୍ଗଲୁ - ଆଉ କିଛି କଥା ମୁଁ ଶୁଣିବାକୁ ରାଜିନୁହେଁ, ମୋ କଥାମାନେ କଥା... କ'ଣ ସେ କହିଥିଲା ତ ? ହାତୀକା ବାତ୍ / ମରଦ କା ଦାନ୍ତ....।

ଗୋଲାବ - ଇଲୋ ମୋ ବୋପା ମାଆଲୋ... କିବା ମରଦର ମରଦ ପଣିଆ ଦେଖ ହୋ...।
କାଳି - ତୁ ବି ଶୁଣିରଖ ମାଆ.. ମୁଁ କାହା ଘରକୁ ଝକିରି କରିବାକୁ ଯିବିନି - ମୁଁ ପାଠ ପଢ଼ିବି ମାନେ ପଢ଼ିବି।
ମଙ୍ଗଲୁ - ଭଲରେ ଭଲରେ କହୁଛି, ମୋ କଥା ନମାନିଲେ ଗୋଟିଗୋଟି କରି ସମସ୍ତଙ୍କୁ ହାଣିବି। ଏଗୁଡାଙ୍କ ସାଙ୍ଗରେ ଫାଲତୁ ଯୁକ୍ତି କଲେ ଗୋଲାପି ନିଶାଟା ମୋର ପୂରା ବେକାର ହେଇଯିବ....(ପ୍ରସ୍ଥାନ)
ଗୋଲାବ - ଦେଖୁଛୁ ତ ତୋ ବାପାର କଥା..
କାଳି - ମୁଁ ସେକଥା ଜାଣିନି... ମୁଁ କେମିତି ପାଠ ପଢ଼ିବି, ସେକଥା ତୁ ବୁଝିବୁ।
ଗୋଲାବ - ହଉ ହଉ ରାତି ପାହୁ, ତା' ନିଶାଛାଡୁ ତା'ପରେ ସେକଥା ଦେଖିବା ...(ପ୍ରସ୍ଥାନ)
କାଳି - ତୁମେ ଯିଏ ଯାହା କରୁଛ କର.. ମୁଁ କିନ୍ତୁ ପାଠ ପଢ଼ିବି, ପାଠ ପଢିବି, ଓକିଲ ହେବି କାଳିଆ ଘୋଡ଼ାରେ ଚଢ଼ିବି... ମଧୁବାବୁ ସାଙ୍ଗେ ଲଢ଼ିବି....।

## ୮ମ ଦୃଶ୍ୟ

*(ରାତି ପାହି ସକାଳ ହେଉ ହେଉ ଗୋଲାବ ପାଟିକରି ହଉଳି କାଳ ଡାକ ପକାଉଛି)*

ଗୋଲାବ - ହେଇଟି ଶୁଣୁଛ...ଶୁଣୁଛ .. ଝିଅ କାହିଁ ଦିଶୁନି। ଝିଅ କୁଆଡ଼େ ପଳେଇ ଯାଇଛି ନା କ'ଣ ଜଣାପଡୁନି।
ମଙ୍ଗଲୁ - ତୁ କେମିତି ଜାଣିଲୁ ? ସେ ପଳେଇଛି ବୋଲି ?
ଗୋଲାବ - ତା'ର ସ୍କୁଲ ଜାମା ନାହିଁ। କି ବହି ବସ୍ତାନି ବି ନାହିଁ।
ମଙ୍ଗଲୁ - ସବୁ ନାଟର ଗୋବର୍ଦ୍ଧନ ତୁ। ସବୁ ତୋ'ରି ପାଲା। ତୁ ଜାଣି ଶୁଣି ତା'କୁ ଭଗେଇ ଦେଇଛୁ। ତୋତେ ଦଉଛି ରହିଥା।
ଗୋଲାବ - ହଁ କହିବନି କାହିଁକି ? କାଳି କୁ ମୁଁ କୁଆଡେ ଭଗେଇ ଦେଲି ନା ଉଡ଼େଇ ଦେଲି ବୋଲି ଭାବୁଛ ?
ମଙ୍ଗଲୁ - ମୋ ପଛରେ, ମୋତେ ଲୁଚେଇ ଲୁଚେଇ ଏ ଘରେ କ'ଣ ସବୁ ଝଲିଥିଲା। ସେକଥା ଏବେ ମୁଁ ଜାଣିପାରୁଛି। ତୁ ତ କାହିଁ ଦିନେ ସେ ସବୁ କଥା ମୋତେ କିଛି କହିନୁ।
ଗୋଲାବ - କ'ଣ ଏମିତି ହେଉଥିଲା ଯେ ମୁଁ ତୁ ମକୁ କହିଥାନ୍ତି ?
ମଙ୍ଗଲୁ - ଝିଅ ମୋତେ ଲୁଚେଇ ଲୁଚେଇ ପାଠ ପଢୁଥିଲା। ସ୍କୁଲ ଯାଉଥିଲା, ବହି ଆଣି ଘରେ ରଖୁଥିଲା, ତୋତେ ତ ଏକଥା ଅଜଣା ନଥିଲା ? ଅଛପା ନଥିଲା ? ମୋତେ ତ ତୁ ସେକଥା କହିପାରିଥାନ୍ତୁ। ନା ସେତେବେଳେ କିଛି କହିଲୁ ନାହିଁ। ଆଉ ଆଜି ସେ ଘରକୁ ପଳେଇଗଲା ପରେ ହାଲ୍ଲା କରୁଛୁ କାହିଁକି ? ସବୁସେଇ ପାଠ ପଢ଼ାର କରାମତି।
ଗୋଲାବ - ମିଛଟାରେ କାହିଁକି ପାଠ ପଢ଼ାକୁ ଦୋଷ ଦେଉଛ କହିଲ ?
ମଙ୍ଗଲୁ - ନୁହେଁ ତ ଆଉ କ'ଣ ? ଦି'ଅକ୍ଷର ପାଠ ପଢ଼ିଛି କି ନାହିଁ। ତା ଆଖି ଫିଟିଗଲା ପରା। ସେଇ ସାହାସ ରେ ରାତି ଅଧରେ ସେ ଆଉକାହା ସାଙ୍ଗରେ ପଳେଇ ଯିବାକୁ ପଦାକୁ ଗୋଡ଼କାଢ଼ି ପାରିଲା।
ଗୋଲାବ - ସାହସ ନା ଝେପା। ସିଏ ସିନା ଦି'ଅକ୍ଷର ପାଠ ପଢ଼ିଥିଲା ଯେ ତା ଆଖି ଫିଟିଗଲା ସେ ଆଉ କାହାସାଙ୍ଗରେ ପଳେଇଲା ବୋଲି ଭାବୁଛୁ। ହେଲେ ମୁଁ ତ ଆଙ୍ଗୁଠି ଛାପ। ମୁଁ ପୁଣି କେଉଁ ସାହାସରେ କେଉଁ ଭରସାରେ ମୋ ବାପା ମାଆ ଭାଇ ଭଉଣୀକୁ ଛାଡ଼ି ତା'ରି ବୟସରେ ତ ସାଙ୍ଗରେ ପଳେଇ ଆସିଥିଲି। ମୋ ଝିଅ

କିନ୍ତୁ ମୋ ଭଳିଆ ନୁହେଁ। ସେ ପାଠ ଦି'ଅକ୍ଷର ପଢ଼ିଛି। ତା'ରି ବୁଦ୍ଧିଅଛି। ମୋ ମନ କହୁଛି ସେ ମୋ ଭଳିଆ କାମ କେବେ ବି ସେ କରିବ ନାହିଁ।

ମଙ୍ଗଲୁ - ତା'ହେଲେ ସେ କୁଆଡ଼େ ଗଲା କହ?

ଗୋଲାବ - ମୁଁ ଭାବୁଛି। ସେ ପାଠ ପଢ଼ିବା ପାଇଁ ପଳେଇଯାଇଛି। କାରଣ ତା'ର ଗୋଟିଏ ବି, ଖାତା ବହି ଘରେ ଛାଡ଼ି ଦେଇ ଯାଇନି। ହେଲେ ରାତିଅଧରେ ଝିଅ ପିଲାଟା, ଗଲା କୁଆଡ଼େ?

ମଙ୍ଗଲୁ - ତା'ହେଲେ ସ୍କୁଲର ସେଇ ଗୁରୁମାଙ୍କ ଘରକୁ ଯାଇଥିବ । ଚାଲଯିବା (ଦୁହେଁ ବାହାରି ଚାଲିଗଲେ) ଦେଖାଗଲା Down Left Stageରେ ଗୁରୁମାଙ୍କ ସହିତ ତାଙ୍କର ଆଲୋଚନା ହେଲା)

ମଙ୍ଗଲୁ - ଡାକ ଗୁରୁମାକୁ ଡାକ...।

ଗୋଲାବ - ଗୁରୁମା ....ଗୁରୁମା.... ।

ଗୁରୁମା - (ପ୍ରବେଶୀ) କ'ଣ ହେଲା କାହାକୁ ଖୋଜୁଛ?

ମଙ୍ଗଲୁ - ଆମ ଝିଅ କାଲି କାହିଁ? ତାକୁ ଆପଣ ଲୁଚେଇ ରଖିଛନ୍ତି?

ଗୁରୁମା - କ'ଣ ହେଲା ମୁଁ ଲୁଚେଇ ରଖିଛି?

ଗୋଲାବ - ନା ନା। ଆପଣ ତାକୁ ଦେଖିଛନ୍ତି କି?

ଗୁରୁମା - ନା ନା ତ! ମୁଁ କେମିତି ଦେଖିବି ? କ'ଣ ହୋଇଛି? ଖୋଲିକୁହ।

ଗୋଲାବ - କାଲି ରାତିରୁ ଝିଅ ଘର ଛାଡ଼ି ପଳେଇ ଯାଇଛି।

ଗୁରୁମା - ପଳେଇ ଯାଇଛି ଯଦି, ପୋଲିସକୁ ଖବର କରୁନ ? ଏଠିକି କାହିଁକି ଆସିଛ?

ମଙ୍ଗଲୁ - ତାକୁ ଆପଣ ପାଠ ପଢ଼ାଉଥିଲେ?

ଗୁରୁମା - ହଁ ପଢ଼ାଉଥିଲି । ସେ ସ୍କୁଲକୁ ଆସୁଥିଲା। କିନ୍ତୁ ନାଁ ଲେଖେଇ ନଥିଲା। ତଥାପି ମୁଁ ତାକୁ ପାଠ ପଢ଼ାଉଥିଲି। ହେଲେ ମୋ ଅପରାଧ କ'ଣ ହେଲା?

ମଙ୍ଗଲୁ - ତୁମେ ତାକୁ ଭଗେଇ ନେଇଛ।

ଗୁରୁମା - ହେ ମୁହଁ ସମ୍ଭାଳି କଥା କୁହ। ନହେଲେ ମୁଁ ତୁମମାନଙ୍କ ନାଁରେ ପୋଲିସ୍‌ରେ ରିପୋଟ୍ କରି ବି ଯେ, ତୁମେ ମୋତେ ଆସି ଧମକ ଦେଉଛ।

ଗୋଲାବ - ନାନା ଗୁରୁମା ସେ କଥା ନୁହେଁ। ଝିଅ ପିଲାଟା ଅଧରାତିରୁ କୁଆଡ଼େ ପଳେଇ ଯାଇଛି। ଆମ ମନକୁ ପାପ ଛୁଉଁଛି । କାଳେ କେଉଁ ବିପଦରେ ପଡ଼ିଯିବ, ସେଇ କଥା ଭାବି ମୋ ମନ ଆଉଟୁ ପାଉଟୁ ହେଉଛି।

ଗୁରୁମା - ମୁଁ କେମିତି ଜାଣିବି କୁହ, ସେ ମୋ ପାଖକୁ ଆସିଲେ ମୁଁ ତୁମକୁ ଜଣେଇବି। ଆରେ ତୁମେ ତା'ର ବାପ ମାଆ ହୋଇ ଯଦି ତା'ର ଭଲମନ୍ଦ କଥା ଭାବିଥାନ୍ତ। ତା' ହେଲେ ନିଜେ କଷ୍ଟକରି ତାକୁ ସ୍କୁଲ କୁ ଆଣି ତା' ନାଁ ଲେଖାଇ ଥାନ୍ତ। ମାଗଣାରେ ତାକୁ ପାଠ ପଢ଼େଇଥାନ୍ତ। ତା' ସାଙ୍ଗରେ ତୁମେ ବି' ଦିଅକ୍ଷର ପାଠ ପଢ଼ି ଶିକ୍ଷିତ ହୋଇଥାନ୍ତ। ମଣିଷ ଭଳି ମଣିଷ ହୋଇ ସୁସ୍ଥ ପରିଚ୍ଛନ୍ନ ଜୀବନ ବିତେଇ ଥାନ୍ତ। ତା' ନକରି ନିଜେ ମଦ ନିଶା ଖାଇ ପଶୁଭଳି ଚାଲୁଛ। ଯେଉଁଠି ରହୁଛ ସେଇଠି ଝାଡ଼ା, ପରିସ୍ରା ଯାଉଛ,

ମଙ୍ଗଲୁ - ହେ...ହେ... ଗୁରୁମା। ତୁମେ ଆଉ ଆମକୁ ପାଠ ପଢ଼ାଅ ନା କହୁଛି, ଆମେ ଯେମିତି ଅଛୁ ଭଲରେ ଅଛୁ।

ଗୁରୁମା - ଜାଣେ ଜାଣେ ତୁମେ ସବୁ କେମିତି ଅଛ। ଆରେ କୁକୁର ଲାଙ୍ଗୁଡ଼ ଯେତେ ସିଧା କରିବାକୁ ଚାହିଁଲେ ବି' ସିଧା କେମିତି ହେବ। ଶୀଘ୍ର ଏଠୁ ପଳେଇଯାଅ କହୁଛି, ନହେଲେ ମୁଁ ଫୋନ୍ କରି ପୋଲିସ କୁ ଡାକିବି।

ଗୋଲାବ - ଥାଉ ଥାଉ ... ଆମେ ଯାଉଛୁ। ଚାଲ ଚାଲ.. (ଦୁହେଁ ଯିବାକୁ ବାହାରିଲେ )

ଗୁରୁମା - (ଗୋଲାବକୁ ଠାରି) ଚୁପ, ଚୁପ୍! ଶୁଣ... ତା'କଥା ଚିନ୍ତା କରିବା ଦରକାର ନାହିଁ। ନିଜ କଥା ଚିନ୍ତା କର। ତୁମେ ନିଜେ ପାଠ ପଢ଼ ଓ ତୁମ ସ୍ୱାମୀକୁ ପଢ଼ାଇବାକୁ ଚେଷ୍ଟାକର।

ଗୋଲାବ - ଏ ବୁଢ଼ୀ କାଳରେ ପାଠପଢ଼ି କରିବି କ'ଣ?

ଗୁରୁମା - ପାଠ ପଢ଼ି କାହାପାଇଁ କିଛି କରିବା ଦରକାର ନାହିଁ। ଆଗ ନିଜ ପାଇଁ କିଛି କରିବାର ଚେଷ୍ଟା କର। ତୁମେ କାଲି ଆସିବ। ମୁଁ ତୁମକୁ ବହି ଖାତା ଦେବି।

ଗୋଲାବ - ବହିଖାତା ଦେଖିଲେ ସିଏ ମୋତେ କଞ୍ଚା ଖାଇଯିବ।

ଗୁରୁମା - ହଉ ହଉ ଆଜି ଯାଅ। ପରେ ସମୟ କରି ଆସିବ । ଦୁହେଁ ବସି କଥାବାର୍ତ୍ତା ହେବା। ତା'ପରେ ନିଜେ ବୁଝିପାରିବ ଯେ ପାଠ ଦି'ଅକ୍ଷର ପଢିଲେ ଲାଭ କ'ଣ ହେବ। (ଗୁରୁମାର ପ୍ରସ୍ଥାନ)

ମଙ୍ଗଲୁ - ଗୁରୁମା ତୋତେ କ'ଣ କହୁଥିଲା କିରେ ?

ଗୋଲାବ - ସ୍କୁଲ ପଛ ପଟ, ନହେଲେ ନଈକୂଳ ଆଡ଼େ ଖୋଜିବାକୁ କହିଲେ।

ମଙ୍ଗଲୁ - ସବୁ ନାଟର ଗୋବର୍ଦ୍ଧନ ସେଇ ଗୁରୁମା, ମୁଁ ମୋ କାଲିକୁ ନପାଇଲେ ତା'ଙ୍କ ନାମରେ ପୋଲିସରେ ଏତଲାଦେବି। ଆଉ କିଛି ସମୟ ପରେ ସେ ବାବୁ ଆଉ ଦୋକାନି ସରକାର ଆସିବେ...ତାଙ୍କୁ କ'ଣ କହିବା, ସେଇକଥା ମୁଁ ଭାବୁଛି।

ଗୋଲାବ - ଆମେ ଦି'ଜଣ ତ କାମ କରିବା କୁ ତିଆର, ବାକି ଝିଅ ଘରକୁ ଫେରିଲେ ତା'କଥା ବୁଝିବା। (ଦୁହେଁ ଯାଇ ଘରେ ପହଞ୍ଚିଲେ । ଦେଖାଗଲା ତାଙ୍କ ପଛେ ପଛେ ମଦଭାଟି ମାଲିକ ଓ ଜଣେ ବାବୁ ତା'ଘରେ ପହଞ୍ଚିଲେ।)

ଆନ୍ନା - କିରେ ମଙ୍ଗଲୁ, ଘରେ ଅଛୁଟି?

ମଙ୍ଗଲୁ - (ବାହାରକୁ ଆସି) ଅଛି ସାଆନ୍ତେ। ଓଳଗି।

ଆନ୍ନା - ଆଉ ତୋ ଘରଣୀ?

ମଙ୍ଗଲୁ - ସେ ବି ଅଛି ସାଆନ୍ତେ। ଗୋଲାବ! ଆରେ ଆସୁନୁ ବାବୁ ଡାକୁଛନ୍ତି ପରା।

ଗୋଲାବ - (ଆସିଲା), ଓଳଗି ସାଆନ୍ତେ!

ଆନ୍ନା - ହେଲା ହେଲା। ତୁମେ ଦିଜଣ ଆମ ଦୋକାନକୁ ବାହାରି ପଡ଼। ଗୋଟିଏ ଟ୍ରଲିରିକ୍ସା ଡାକି ତୁମର ଘର କରଣା ଜିନିଷ ସବୁ ସାଙ୍ଗରେ ନେଇ ଚାଲ। ଆଜିଠାରୁ ସେଇଠି ରହିବ।

ମଙ୍ଗଲୁ - ହଁ ଯେ ସାଆନ୍ତ। ଟ୍ରଲିରିକ୍ସା ଡାକିବି ତାକୁ ପଇସା ଦେବାକୁ ପଡିବ। ପିଇସା କାହିଁ। ଆମେ ଦି ଜଣ ଥର ଥର କରି ହାତରେ ଧରି ଆମର ଘରକରଣା ଜିନିଷ ନେଇଯିବୁନି।

ଆନ୍ନା - ଆରେ ପଇସା କଥା ଚିନ୍ତା କରନା ଟ୍ରଲିପଇସା ମୁଁ ଦେଇଦେବି। ଟ୍ରଲି ଡାକିଦେ।

ମାଙ୍ଗଲୁ - ଯାଉଛି ସରକାର......।

ଆନ୍ନା - ବାକି ତୋ ଝିଅ କାହିଁ? ତାକୁ ଡାକ। ତାକୁ ନେବାକୁ ବାବୁ ଆସିଛନ୍ତି ପରା!

ଗୋଲାବ - ବାବୁ ଆସିଛନ୍ତି ଯେ - ହେଲେ ସେ ତ ସାନ ପିଲାଟା; ବୟସ ତାକୁ ୧୩ ପୁରି ଚଉଦ ଚାଲିଲା। ସେ ବା' କି କାମ କରି ପାରିବ। ଆମେ ଦିଜଣ ମିଶି ତା' କାମ ବି' କରିଦିଅନ୍ତୁ।

ବାବୁ - ତା'କାମ ଅଲଗା, ତୁମ କାମ ଅଲଗା, ତା' କାମ କ'ଣ ତୁମେ କରି ପାରିବ? ତା'ଛଡା ତୁମେ ତ ରହିବ ଭାଟିରେ ଆଉ ସେ ରହିବ ଆମଘରେ, ଉଆସରେ, ବୁଝିଲୁ।

ଆନ୍ନା - ଆରେ ଝିଅ ବାବଦରେ ଯଦି ତୁମକୁ ଅଧିକା ପଇସା ଦରକାର କହୁନ, ବାବୁ ପଇସା ବଢ଼େଇ ଦେବେ, ସେକଥା କ'ଣ ତାଙ୍କୁ ବଳେଇଯିବ ?

ବାବୁ - ମାସକୁ ୬ହଜାର ଟଙ୍କା ଦେବି। ଖାଇବାକୁ ଦେବି, ଲୁଗାପଟା ସବୁ ଦେବି। ତାକୁ ନାଚ, ଗୀତ ଶିଖେଇବି । ଦେଖିବୁ ମାସ କେଇଟା ଭିତରେ ତା' ଚେହେରା ଦେଖି ତୁମେ ଚିହ୍ନି ପାରିବ ନାହିଁ।

ଆନ୍ନା - ଆରେ ସେ ନିଜେ ତ ରାଜରାଣୀ ହୋଇ ରହିବ ଆଉ ତୁମକୁ ବି ପାଳି ପୋଷି ସମ୍ଭାଳି ନେବ।

ଗୋଲାବ - ସେ ତ ନାବାଳକ ତାକୁ କାମକୁ ପଠାଇବି ? ଆଉ କିଏ ଜାଣିଲେ ମୁଁ ଅସୁବିଧା ରେ ପଡ଼ିବି। ଥାନା ପୋଲିସ ହେବି । ତୁମେ ବି' ହଇରାଣ ହେବ ବାବୁ।

ବାବୁ - ଆମ କଥା ଆମ ଉପରେ ଛାଡ଼ିଦେ। ତୋତେ ଯିଏ ପଚାରିଲେ ଖାଲି କହିବୁ,ଝିଅ ମୋର ପାଠ ପଢ଼ିବାକୁ ମୋର ଜଣେ ସମ୍ପର୍କୀୟଙ୍କ ଘରକୁ ଯାଇଛି, ବର୍ଷ କେଇଟା ରେ ପାଠଶାଠ ପଢ଼ି ବଡ଼ ମଣିଷ ହୋଇ ଫେରିବ। ବାକି କଥା ମୁଁ ସମ୍ଭାଳି ନେବି।

ଆନ୍ନା - ତା ହାତରେ କିଛି ଟଙ୍କା ଧରେଇ ଦେଲ ବାବୁ। ତେଣିକି ତା'ର ବିଶ୍ୱାସ ହୋଇଯିବ।

ବାବୁ - ନେ, ଛଅ ହଜାର ଟଙ୍କା ନେ...ପୂରା ମାସକର ଦରମା ଆଡଭାନ୍ସ....। (ମଙ୍ଗଲୁ ହାତରେ ଟଙ୍କା ଧରେଇ ଦେଲା) ଏଥର ଝିଅକୁ ଡାକ।

ମଙ୍ଗଲୁ - (ଥଥ ମମ ହୋଇ, ଘର ଭିତରକୁ ଆଉ ଗୋଲାବର ମୁହଁକୁ ଅନେଇଲା)।

ଗୋଲାବ - କାଲି ବାହାକୁ ଆସ। ବାବୁ ଡାକୁଛନ୍ତି ପରା। (ଘର ଭିତରୁ ପୋଲିସ ବାହାରି ଆନ୍ନା ଓ ବାବୁକୁ ଧରି ପକାଇଲେ। ଅନ୍ୟ ଦିଗରୁଆସିଲେ ଗୁରୁମା, କାଲି ଓ କିଛି ସ୍ୱେଚ୍ଛାସେବକ।)

ପୋଲିସ - ସାବାସ କାଲି ! ତୋର ସାହସ ଓ ବୁଦ୍ଧି ପାଇଁ ଆମେ ଦିଜଣ ପିଲା ଚୋରଙ୍କୁ ଧରି ପାରିଲୁ। ବିଶେଷ କରି ଝିଅ ଚାଲାଣ କରି ଚାଲିଥିବା ଏଇ କ୍ରିମିନାଲକୁ ସହଜରେ ଧରିପାରିଲୁ। ଏଥର ତୁମ ବେପାର ଖତମ । ଚାଲ ଏବେ ଜେଲରେ ପଶି ଘଣାପେଲିବ।

ଗୁରୁମା - ତୁମ ଝିଅ ନିଜର ସାହାସ ଓ ବୁଦ୍ଧି ଖଟାଇ କେବଳ ନିଜକୁ ବଞ୍ଚାଇ ନାହିଁ। ତୁମ ଦିଜଣକୁ ବି ଗୋତି ଶ୍ରମିକ ହେବାରୁ ରକ୍ଷାକରି ପାରିଛି। ନହେଲେ ତୁମେ ଦି'ଟା ଆଉ କିଛି ଦିନ ପରେ କେରଳ କିମ୍ବା ଆନ୍ଧ୍ରକୁ ଯାଇ ଗୋତି ଶ୍ରମିକ ହୋଇ କେଉଁ ଇଟା ଭାଟିରେ ନହେଲେ ଖାରଖାନାରେ ଖଟିଖଟି ମରିଥାନ୍ତ।

ପୋଲିସ - ତା'ର ପ୍ରଚେଷ୍ଟା କୁ ଅନେକ ଅନେକ ଧନ୍ୟବାଦ ଦେବା ଉଚିତ !

ଗୁରୁମା - ବୁଝିଲେ ସାର୍ -ଏଇ "କାଲି" ଗୋଟିଏ ବାଇଚଢ଼େଇ ...

ପୋଲିସ - ବାଇଚଢ଼େଇ ? କେମିତି ? ମୁଁ କିଛି ବୁଝି ପାରିଲନି।

ଗୁରୁମା - ବାଇଚଢ଼େଇ ର ଡେଣାରେ ଉଡ଼ିବାର ଏତେ ଶକ୍ତିନଥାଏ ତଥାପି ସେ ଖଣ୍ଡି ଉଡ଼ାମାରି ଯାଇ ତାଳଗଛ ଅଗରେ ନିଜର ବସା ବାନ୍ଧିପାରେ। ଏଇ ମଣିଷ ଦାଉରୁ ନିଜକୁ ଆଉ ନିଜ ସଂସାରକୁ ପିଲାମାନଙ୍କୁ ବଞ୍ଚେଇ ରଖିବ ବୋଲି ସେମିତି କାଲି ପାଖରେ ପାଠ ପଢ଼ିବା ପାଇଁ ପଇସା ନାହିଁ କି ପରିବାରର ସାହାଯ୍ୟ ସହଯୋଗ ବି ନାହିଁ। ତଥାପି ସେ ତା'ର ଦୃଢ଼ ଇଚ୍ଛା ଶକ୍ତି ଆଉ ନିରନ୍ତର ଚେଷ୍ଟା ବଳରେ ଆଜି ପାଠ ପଢ଼ିବାର ସିଦ୍ଧାନ୍ତ ନେଇ ଏକା ଏକା ବଡ଼ ସ୍ୱପ୍ନ ଦେଖି ଆଗେଇ ପାରିଛି ତେଣୁ ତାକୁ ବାହାବା ଦେବାକୁ ପଡ଼ିବ। କାରଣ ସେ ଆମ ସମସ୍ତଙ୍କ ପାଇଁ ଗୋଟିଏ ଉଦହାରଣ ପାଲଟି ଯାଇଛି।

ପୋଲିସ - ସେ କଥା ସତ ଯେ ହେଲେ ସେଇ ବାଈ ଚଢ଼େଇ ର ସ୍ୱପ୍ନ କୁ ସାକାର କରିବାକୁ ସାହସ ଯୋଗାଇଛି ଯିଏ ତାକୁ ବି ତ ଧନ୍ୟବାଦ ଦେବାଉଚିତ ନା, ନୁହଁ ? ବୁଝିଲେ ଗୁରୁମା ... କେବଳ ପାଠ ପଢ଼ାଇ

ପିଲାଙ୍କୁ ମଣିଷ କରାଇ ହୁଏନା । ତାଙ୍କୁ ସ୍ୱପ୍ନ ଦେଖାଇ ଉତ୍ସାହିତ କରିବାକୁ ପଡ଼େ। ଆପଣଙ୍କ ପରି ଗୁରୁମା ମାନଙ୍କ ପାଇଁ ଦେଶ ଗର୍ବିତ, ଆପଣଙ୍କୁ ଅଶେଷଧନ୍ୟବାଦ...।

ଗୁରୁମା - ଧନ୍ୟବାଦ ସାର୍ - ଆପଣ ଏଇ କ୍ରିମିନାଲଙ୍କ କଥା ବୁଝନ୍ତୁ। ଆଉ ଏଇ ମଙ୍ଗଲୁ କୁ କହନ୍ତୁ ସେ ଏଣିକି ଆଉ ନିଶାପାଣି କରିବ ନାହିଁ।

ଗୋଲାବ - ନା...ନା...ସେ ଆଉ ନିଶା ପାଣି କରିବେ ନାହିଁ।

ପୋଲିସ - ଚୁପ୍। ତୋ କଥାରେ ତା'ର ସୁଧାରିବାର ଥିଲେ କେବେଠୁଁ ସେ ସୁଧୁରି ସାରନ୍ତାଣି - ଏଥର ତା' କଥା, ମୋର ଏଇ ଦଣ୍ଡ। ବୁଝିବ ବୁଝିଲୁ ମଙ୍ଗଲୁ ଏଣିକି ତୁ ତୋ ମଦ ପିଇବା ଛାଡିଦେ ନହେଲେ ତୋତେ ଜେଲରେ ପୁରେଇ ଲାଠିରେ ନିଇତି ଖୁବଣ ଦେବି, ବୁଝିଲୁ। ଚାଲରେ (ପ୍ରସ୍ଥାନ)

ଗୁରୁମା - ଗୋଲାବ ଆଉ ମଙ୍ଗଲୁ ତୁମେ ଏଣିକି ଏମାନଙ୍କ ପାଖରେ ତାଙ୍କ ନିଶା ନିବାରଣ କେନ୍ଦ୍ରରେ ରହିବ। ପାଠ ପଢ଼ିବ, କାମଦାମ କରିବ। ନିଜେ ରୋଜଗାର କରି ନିଜ ଗୋଡ଼ରେ ନିଜେ ଛିଡ଼ା ହେବ।

ଗୋଲାବ - ଆଉ ମୋ ଝିଅ ....

ଗୁରୁମା - ତା'କଥା ଚିନ୍ତା କରିବା ତୁମର ଦରକାର ନାହିଁ। ସେ ପାଠ ପଢୁଛି, ପାଠ ପଢ଼ିବ, ତା' ପାଠ ପଢ଼ା ଦାୟିତ୍ୱ ମୋର ଆଉ ସରକାରଙ୍କର। ସେ ଏଣିକି ବାଜିରାଉତ ହଷ୍ଟେଲରେ ରହିବ। ନିଜେ ପଢ଼ିବ ଏବଂ ସମୟ ସୁବିଧା ଦେଖି ତା'ରି ଭଳି ଏଇ ଜରି ବସ୍ତିରେ ଥିବା ଆହୁରି ଅନେକ ପିଲାମାନଙ୍କୁ ସେ ପାଠ ପଢ଼େଇବ। ସେ ଏଣିକି ମୋ ଝିଅ ତା କଥା ମୁଁ ବୁଝିବି। ତୁମେ ଯାଅ ।

କାଳି - ତୁ ଚିନ୍ତା କରନା ମାଆ। ଶୁଣ ବାପା। ତୁ ସିନା ପାଠ ପଢିଲୁ ନାହିଁ । ତୁ ଦି'ଅକ୍ଷର ପାଠ ପଢିଥିଲେ ଏତେ ହିନସ୍ତା ହେବାକୁ ପଡି ନଥାନ୍ତା। ମୁଁ କିନ୍ତୁ ପାଠ ପଢିବି ଆଉ ଏହି ଜରିବସ୍ତିର ଲଙ୍ଗଳା ପିଲାମାନଙ୍କୁ ପାଠ ପଢିବା ଶିଖେଇବି।

ପାଠ ପଢିବି ପାଠ ପଢିବି କାଳିଆ ଘୋଡ଼ାରେ ଚଢ଼ିବି ମଧୁବାବୁ ସଙ୍ଗେ ଲଢବି। (ନେପଥ୍ୟରୁ ଶୁଣାଯାଉଥିଲା ଗୀତ)

ପାଠ ପଢ଼େଇବି - ଗୀତ ଗାଇବି, ନାଚିବି ... ବାଇଚଢ଼େଇ ରେ ବାଇ ଚଢ଼େଇ ,
ତୋ ମାଆ ଯାଇଛି ଗାଈ ଚରେଇ

ଘୂରି ଘୂରିକା ନାରୀ ଯିଏ ପାଇବ ତାହାରି।
(ସମସ୍ତେ ହସି ଉଠିବେ। ଧୀରେ ଧୀରେ ପରଦା ଖସିଲା ।)

**(ଅନ୍ଧାର)**

## ନବୀନ କୁମାର ପରିଡ଼ା ଙ୍କର ଅଦ୍ୟାବଧି ପ୍ରକାଶିତ ପୁସ୍ତକର ତାଲିକା

| | | | |
|---|---|---|---|
| ୧. | ମଞ୍ଚସଜ୍ଜା ଓ ଆଲୋକ ବିନ୍ୟାସ | --- | ୮୦/- |
| ୨. | ନାଟ୍ୟ କଥା | --- | ୮୦/- |
| ୩. | ବିଦ୍ୟାଳୟ ନାଟ୍ୟ ଶିକ୍ଷା ଓ ନାଟ୍ୟ ତ୍ରୟୀ (ତିନୋଟି ନାଟକ) | --- | ୮୦/- |
| ୪. | ନାଟୁଆ ଓ ଅନ୍ୟାନ୍ୟ ନାଟକ (ସାତଟି ନାଟକ) | --- | ୧୫୦/- |
| ୫. | ଅନ୍ଧପୁଟୁଳିର ଖେଳ ଓ ଅନ୍ୟାନ୍ୟ ନାଟକ (ସାତଟି ନାଟକ) | --- | ୧୫୦/- |
| ୬. | କଲେଯେତେ ହୁନ୍ଦର ଓ ଅନ୍ୟାନ୍ୟ ନାଟକ (ସାତଟି ନାଟକ) | --- | ୧୮୦/- |
| ୭. | ଡଷ୍ଟବିନ୍ ଓ ଅନ୍ୟାନ୍ୟ ନାଟକ (ପାଞ୍ଚଟି ନାଟକ) | --- | ୧୮୦/- |
| ୮. | ଅଭିନେତା, ଚରିତ୍ର ଓ ଅଭିନୟ (ଏକ ପ୍ରୟୋଗାତ୍ମକ ବିଶ୍ଳେଷଣ) | --- | ୧୫୦/- |
| ୯. | ନାଟ୍ୟ ପ୍ରବନ୍ଧ | --- | ୧୭୦/- |
| ୧୦. | ବାଇଚଢ଼େଇର ଡେଣା ଓ ଅନ୍ୟାନ୍ୟ ନାଟକ (ପାଞ୍ଚଟି ନାଟକ) | --- | ୧୮୦/- |




**ନବୀନ କୁମାର ପରିଡ଼ା**

ଜନ୍ମ -୦୮-ମାର୍ଚ୍ଚ-୧୯୫୪, ପିତା: ୰ ହରିଶ୍ଚନ୍ଦ୍ର ପରିଡ଼ା, ମାତା: ୰ ବିଷ୍ଣୁପ୍ରିୟା ପରିଡ଼ା, ସ୍ଥାନ - ଜମାଳପୁର, ଜଳେଶ୍ୱର, ବାଲେଶ୍ୱର।

ଲେଖକ ବିଶ୍ୱନାଥ ଏକାଡ଼େମୀ ଜମାଳପୁରରୁ ମାଟ୍ରିକ ଶିକ୍ଷା ସମାପ୍ତ କରି ପରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ, କଲିକତାରୁ ନାଟକରେ ସ୍ନାତୋକତ୍ତର ଡିଗ୍ରୀ ହାସଲ କରି ଉତ୍କଳ ସଂଗୀତ ମହାବିଦ୍ୟାଳୟର ନାଟକ ବିଭାଗରେ ୧୯୮୩ ମସିହାରେ ନାଟକ ବିଭାଗର ଅଧ୍ୟାପକ ଭାବେ ଯୋଗଦାନ କରି ସଫଳତାର ସହିତ ନାଟ୍ୟକଳାରେ ଅଧ୍ୟାପନା ଦାୟିତ୍ୱ ନିର୍ବାହ କରି ପରେ ନାଟକ ବିଭାଗର ମୁଖ୍ୟ ଭାବେ ଓ ଉତ୍କଳ ସଂଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ କାର୍ଯ୍ୟକରି ୨୦୧୨ ରେ ଅବସର ଗ୍ରହଣ କରିଛନ୍ତି। ନାଟ୍ୟରଚନା ବ୍ୟତୀତ, ନାଟ୍ୟପୁସ୍ତକ ରଚନା, ନିର୍ଦ୍ଦେଶନା, ଅଭିନୟ ଏବଂ ନାଟ୍ୟକର୍ମଶାଳା ଆୟୋଜନ କରିବାରେ ସେ ସିଦ୍ଧହସ୍ତ। ତାଙ୍କର ଅଦ୍ୟାବଧି ଲିଖିତ ପୁସ୍ତକ ଗୁଡ଼ିକ ହେଲା-୧-ନାଟ୍ୟ କଥା, ୨-ମଞ୍ଚସଜ୍ଜା ଓ ଆଲୋକ ବିନ୍ୟାସ , ୩- ବିଦ୍ୟାଳୟ ନାଟ୍ୟଶିକ୍ଷା ଓ ନାଟ୍ୟତ୍ରୟୀ, ୪ - ଅଭିନେତା ଚରିତ୍ର ଓ ଅଭିନୟ, ୫- ନାଟ୍ୟ ପ୍ରବନ୍ଧ, ନାଟକ : ୬ - ନାଟୁଆ ଓ ଅନ୍ୟାନ୍ୟ ନାଟକ, ୭- ଅନ୍ଧ ପୁତୁଳିର ଖେଳ ଓ ଅନ୍ୟାନ୍ୟ ନାଟକ। ୯. କଲେ ଯେତେ ହୁନ୍ଦର ଓ ଅନ୍ୟାନ୍ୟ ନାଟକ, ୯- ଡଷ୍ଟବିନ୍ ଓ ଅନ୍ୟାନ୍ୟ ନାଟକ, ୧୦ - ବାଇଚଢ଼େଇର ଡେଣା ଓ ଅନ୍ୟାନ୍ୟ ନାଟକ ।


**ଯୋଗାଯୋଗ ଠିକଣା :** ବି- ୬/୧୦
ଇନ୍ଦିରାଗାନ୍ଧୀ ହାଉସିଂ କଲୋନି
ପୋ: ଶିଶୁପାଳ ଗଡ଼, ଭୁବନେଶ୍ୱର - ୭୫୧୦୦୨
ଟେଲିଫୋନ୍ - ୯୪୩୭୪୬୮୭୮୦
e-mail : nabinparida78@gmail.com
website : www.nabinabarnalinatyasantha.com